## <◌ ◌> ର ଉ

ଅପମୃତ୍ୟୁ, ଇଚ୍ଛାମୃତ୍ୟୁ, ଶିଶୁମୃତ୍ୟୁ,

## ଏ ଅ <◌ ◌>

ଏକଛତ୍ର, ଏକଜୁଟ, ଏକନିଷ୍ଠ, ଏକବୁଝା, ଏକଭାଷୀ, ଏକଶିଂଗା, ଏକଷଠି, ଏକଶିରା, ଏକସ୍ତରି, ଏତଦ୍ଦ୍ୱାରା, ଏବଂବିଧ, ଏବଂଭୂତ, ଏଷଣୀୟ, ଏସରାଜ, ତେଜପତ୍ର, କ୍ଷେମଂକର, ତେଜରାତି, ତେଜସ୍ୱିତା, ତେଜସ୍ୱିନୀ, ତେଜସ୍କ୍ରିୟ, ଦେଢ଼ଶାଶୁ, ଦେଢ଼ଶୁର, ଦେବଦାରୁ, ଦେବଦାସ, ଦେବଦାସୀ, ଦେବଦୂତ, ଦେବଯାନୀ, ଦେବରାଜ, ଦେବଶର୍ମା, ଦେବହୂତି, ଦେଣନେଣ, ନେତ୍ରମଣି, ପ୍ରେରଣୀୟ, ପ୍ରେରୟିତା, ଫେରଫାର, ଫେଟକାମି, ଫେରକାନି, ବେଗତିକ, ବେଗବତୀ, ବେଗଶାଳୀ, ବେଜବାବ୍, ବେତଉଲ, ବେଦବ୍ୟାସ, ବେଧନିକା, ବେଧନୀୟ, ବେପରୁଆ, ବେରସିକ, ବେଶବାସ, ବେଶଭୂଷା, ବେସରମ, ବେଦଖଲ, ବେଦଖଲୀ, ଭେଦନୀୟ, ଭେଶରିଆ, ମେଘନାଦ, ମେଂଟମାଂଟ, ମେହନତ, ମେହନତୀ, ଯେନକେନ, ଯେବକାର, ଲେଖକୀୟ, ଲେଖନୀୟ, ଲେହନୀୟ, ଶେଷକାଳ, ଶେଷଦଶା, ସେଚନୀୟ, ହେଂକଡ଼ାମୀ, ହେମକାଂତ, ହେମଲତା, ହେରଷାମି, ସ୍ୱେଦନିକା, ସ୍ୱେଦନୀୟ, ସ୍ୱୈରମୁଖ, ସ୍ୱୈରମୁଖୀ, ହେଳନୀୟ, କେଶପାଶ, କ୍ଷେତ୍ରମିତି, କ୍ଷେତ୍ରପାଳ, କ୍ଷେପଣିକ, କ୍ଷେପଣୀୟ, ଚେତନୀୟ, ଚେଷ୍ଟମାନ, ଛେଦନୀୟ, ଛେରକୁରା, ଛେରକୁରୀ, ତେଲଉଣି, ପେଷଣୀୟ, ତେଲଂଗାଣୀ, ଲେଫଡ଼ିବା,

## ଏ ଆ <◌ ◌>

ଏକାକିନୀ, ଏକାକ୍ଷର, ଏକାକ୍ଷରୀ, ଏକାଟିଆ, ଏକାତ୍ମତା, ଏକାଦଶ, ଏକାଦଶୀ, ଏକାବନ, ଏକାଶ୍ରୟ, ଏକାହାରୀ, ଏତାଦୃଶ, ଦେଖାଚାହାଁ, ଦେଖାଶୁଣା, ଦେଖାରଖା, ଦେଖାଣିଆ, ଦେବାଳୟ, ଦେବାଲିଆ, ଦେଶାଚାର, ଦେଶାଂତର, ଦେଶାଂତରୀ, ପେସାଦାର, ପେସାଦାରି, ପେସାଦାରୀ, ପ୍ରେକ୍ଷାଳୟ, ପ୍ରେକ୍ଷାଗାର, ପ୍ରେକ୍ଷାଗୃହ, ଫେଣାଇବା, ଫେନାୟିତ, ବେଆଇନ, ବେଖାତିର, ବେଗାବେଗି, ବେଦାଭ୍ୟାସ, ବେଦାଶ୍ରୟ, ବେମାରିଆ, ବେଳାବେଳି, ବେଳାଭୂମି, ବେଶ୍ୟାଳୟ, ବେହାଲିଆ, ବେକାଇଦା, ବେତାଳିଆ, ମେଘାଚ୍ଛନ୍ନ, ମେଘାଳୟ, ମେଘାସନୀ, ମେଧାବିନୀ, ରେଖାଂକନ, ରେଖାଂକିତ, ଲେଖାପଢ଼ା, ଲେଖାଯୋଖା, ଶେଫାଳିକା, ଶେଷାବସ୍ଥା, ସେନାପତି, ସେନାଧ୍ୟକ୍ଷ, ସେନାବାସ, ସେବାୟତ, ସେବାୟତି, ସ୍ୱେଚ୍ଛାଚାର, ସ୍ୱେଚ୍ଛାଚାରୀ, ହେପାଜତ, ସ୍ୱେଚ୍ଛାଧୀନ, ହେମାଳିଆ, ହେଲାପେଲା, ସ୍ନେହାସ୍ପଦ, ସ୍ନେହାସ୍ପଦା, ସ୍ୱେଦାପ୍ଲୁତ, ସ୍ୱେଦାୟନ, ହେତ୍ୱାଭାସ, ହେଡ଼ାଖାଇ, ହେଡ଼ାଖିଆ, ଖେସାରତ, ଖେସାରତି, ଗେଂଡାଳିଆ, ଗେଧାଇବା, ଘେନାଇବା, ଘେନାଘେନି, ଚେତାଇବା, ଚେତାବନୀ, ଛେଦାଇବା, ଛେନାଗୁଡ଼, ଛେନାପାଣି, ଟେକାଟେକି, ଡେଙ୍ଗାକିଶ, ପେଂଗାଇବା, ଚ୍ଚପେଟାଇବା,

## ଏ ଇ <◌ ◌>

ଏଂଡିଚାଷ, ଏଂଡିପୋକ, ଫେରିବାଲା, ଲେଲିହାନ, ଡେରିମେରି, ଢେଙ୍କିଚେଙ୍, ଗୋଡ଼ିଖୋଳ, ଡେବିରିଆ, ବେଠିକଣା, ବେନିୟମ, ବେଫିକର, ବେହିଆଣୀ, ବେହିଆନି, ବେହିସାବ, ବେହିସାବୀ, ବେଇଜ୍ଜତ୍, ବେଇମାନ୍,

## ଏ ଈ <◌ ◌>

ତେଜୀୟସୀ, ତେଜୀୟାନ୍, କେଂଦ୍ରୀକୃତ, କେଂଦ୍ରୀଭୂତ, ଏକୀକୃତ, ଏକୀଭୂତ,

## ଏ ଉ <◌ ◌>

ଏକୁଟିଆ, ଖେଳୁଆଡ଼, ମେରୁଦଂଡ, ମେରୁହାଡ଼, ବେଗୁଆର, ଲେଉଟାଣ, ଲେଉଟାଣି, ଲେଂଗୁଟିଆ, ହେତୁବାଦ, ହେତୁବାଦୀ, କେରୁଆଳ, ବେମୁରବି, ବେଉଷଣ, ବେଗୁନିଆ,

## ଏ ଏ <◌ ◌>

ମେହେଂତର, ଯେତେବେଳେ, କେତେବେଳେ, ସେତେବେଳେ, ରେରେକାର, ଏକେଶ୍ୱର,

## ଏ ଓ <◌ ◌>

ଏକୋଇଶା, ଏକୋଦ୍ଦିଷ୍ଟ, ଏକୋଦ୍ଦେଶ୍ୟ,

## ଅ ଏ <◌ ◌>

ଅଚେତନ, ସଚେତନ, ଅନ୍ୱେଷକ, ଅନ୍ୱେଷଣ, ଅନ୍ୱେଷିତ, ଅପେକ୍ଷିତ, କଳେବର, କର୍ମେଂଦ୍ରିୟ, ଗବେଷକ, ଗବେଷଣା, ଜନ୍ମେଜୟ, ପଦେପଦେ, ପଦେଅଧେ, ପ୍ରକ୍ଷେପକ, ପ୍ରକ୍ଷେପଣ, ପ୍ରବେଶିକା, ପ୍ରହେଳିକା, ମହେଶ୍ୱର, ସଂକ୍ଷେପଣ, ସଂକ୍ଷେପତଃ, ସଂବେଦନା, ସହେତୁକ, ସମ୍ମେଳନ, ସଦେଶୀୟ, ସବେତନ, ହରେକୃଷ୍ଣ, ସର୍ବେସର୍ବା,

## ଆ ଏ <◌ ◌>

ଆପେକ୍ଷିକ, ଆବେଦକ, ଆବେଦନ, ନାକେଦମ୍, ପ୍ରାଦେଶିକ, ସାଂକେତିକ,

## ଇ ଏ <◌ ◌>

ନିକେତନ, ନିଷେଚକ, ନିଷେଚନ, ଜିତେଂଦ୍ରିୟ, ନିକ୍ଷେପଣ, ନିଷ୍ପେଷଣ, ନିଷ୍ପେଷିତ, ବିଶେଷଜ୍ଞ, ବିଶେଷତଃ, ବିଶେଷତ୍ୱ, ବିଶ୍ଳେଷକ, ବିଶ୍ଳେଷଣ, ବିଶ୍ଳେଷିତ, ବିଶେଷଣ, ବିବେଚନା, ବିବେଚିତ,

ଉ ଏ <◌ ◌>

ଉତେଜକ, ଉତେଜନା, ଉତେଜିତ, ଉପେକ୍ଷକ, ଉପେକ୍ଷିତ, ସୁରେଶ୍ୱର, ଶୁଭେଚ୍ଛୁକ, କୁହେଳିକା,

ଐ ଏ <◌ ◌>

ବୈଦେଶିକ,

ଓ ଏ <◌ ◌>

ଯୋଗେଶ୍ୱର,

ଔ ଏ <◌ ◌>

ନୌସେନାନୀ,

<◌ ◌ ◌> ଏ

ଉପଲକ୍ଷେ, ପରେପରେ, ଦିନେକାଳେ, କାଳକ୍ରମେ, ମୁହେଁମୁହେଁ,

<◌ ◌> ଏ ଅ

ଖିଆବେଳ, ଖାରବେଳ, ରାଶିତେଲ, ଅବଶେଷ, ପିଲାଖେଳ, ପକ୍ୱକେଶ, ମହାଦେବ, ଗୁରୁଦେବ, ମହାଦେଶ, ଦୁର୍ଗାମେଢ଼, ହୃଦୟେଶ, ପରିଶେଷ, ଛଦ୍ମବେଶ, ନିରପେକ୍ଷ, ନିରୁଦେଶ,

<◌ ◌> ଏ ଆ

ଲୋକସେବା, ଜନସେବା, ସ୍ଥଳସେବା, ରାଜନେତା, ଅବହେଳା,

<◌ ◌> ଏ ଇ

ନାବକେଳି, ପ୍ରଜାମେଳି, ଯଜ୍ଞବେଦି, ଜମ୍ବେଣି,

<◌ ◌> ଏ ଈ

ଶବ୍ଦଭେଦୀ, ଛଦ୍ମବେଶୀ, ପରଦେଶୀ,

<◌ ◌> ଏ ଉ

ସ୍ୱର୍ଣ୍ଣରେଣୁ, କାମଧେନୁ,

## ଐ ଅ <◌ ◌>

ଐକତାନ, ଐତରେୟ, ଐଶ୍ୱରିକ, ଜୈବଖାଦ୍ୟ, ତୈଳବୀଜ, ତୈଳଯଂତ୍ର, ତୈଳହେକ, ତୈଳକୂପ, ତୈଳକ୍ଷେତ୍ର, ତୈଳଚିତ୍ର, ଦୈନଂଦିନ, ଦୈନଂଦିନୀ, ଦୈତ୍ୟକୁଳ, ଦୈତ୍ୟଗୁରୁ, ଦୈତ୍ୟମାତା, ଦୈବବାଣୀ, ଦୈବକ୍ରମେ, ଧୈର୍ଯଚ୍ୟୁତ, ଧୈର୍ଯଚ୍ୟୁତି, ଧୈର୍ଯବାନ୍, ଧୈର୍ଯଶାଳୀ, ଧୈର୍ଯଶୀଳ, ଧୈର୍ଯହରା, ଧୈର୍ଯହାନି, ଧୈର୍ଯହୀନ, ନୈକଟିକ, ନୈୟମିକ, ନୈରପେକ୍ଷ୍ୟ, ନୈଶଭୋଜି, ନୈଶଯୁଦ୍ଧ, ନୈଷଧୀୟ, ନୈସର୍ଗିକ, ନୈସର୍ଗିକୀ, ଭୈଷଜିକ, ଶୈଳସୁତା, ଶୈଳବାଳା, ଶୈଳଭାମା, ଶୈଳତୀର୍ଥ, ଶୈଳଶୀର୍ଷ, ଶୈଳସାନୁ, ଶୈବଳିତ, ଶୈବପୀଠ, ସୈକତିକ, ସ୍ୱୈରଚାର, ସ୍ୱୈରଚାରୀ, ସ୍ୱୈରତଂତ୍ର, ହୈମଂତିକ, ହୈମବତୀ, ବୈକହ୍ନିକ, ବୈଜୟଂତ, ବୈଜୟଂତୀ, ବୈତନିକ, ବୈତରଣୀ, ବୈପ୍ଳବିକ, ବୈଲକ୍ଷଣ୍ୟ, ବୈଶ୍ୱଦେବ, ବୈଷୟିକ, ବୈଷୟିକୀ, ବୈପରୀତ୍ୟ, ହୈମଂତିକ, ହୈମଂତିକୀ,

## ଐ ଆ <◌ ◌>

ଐକାଂତିକ, ଐକାହିକ, ଐରାବତ, ଦେବାଧୀନ, ଦୈବାଦେଶ, ଦୈତ୍ୱାଭାଷ, ଦ୍ୱୈପାୟନ, ଦ୍ୱୈମାତୁର, ଦ୍ୱୈମାତୃକ, ନୈୟାୟିକ, ପୈଶାଚିକ, ନୈଶାବାସ, ନୈଶାହାର, ସୈନ୍ୟାପତ୍ୟ, ସୈନ୍ୟାଧ୍ୟକ୍ଷ, ଶୈଳାରୋହୀ, ବୈକାଳିକ, ବୈଜ୍ଞାନିକ, ବୈଦାଂତିକ, ବୈଧାନିକ, ବୈବାହିକ, ବୈମାନିକ, ବୈଶାରଦ, ବୈଶ୍ୱାନର, ବୈସାଦୃଶ୍ୟ,

## ଐ ଇ <◌ ◌>

ନୈତିକତା, ନୈଷ୍ଠିକତା, ନୈମିତ୍ତିକ,

## ଐ ଈ <◌ ◌>

ଶୈଳୀପତ୍ର, ଶୈଳୀଚର୍ଚ୍ଚା,

## ଐ ଏ <◌ ◌>

ଶୈଳେଶ୍ୱର, ବୈଦେଶିକ,

## ଅ ଐ <◌ ◌>

ତଥୈବଚ, ଅନୈତିକ, ଅବୈଧତା, ଚରୈବେତି, ଅଷ୍ଟୈଶ୍ୱର୍ଯ,

## ଆ ଐ <◌ ◌>

ଆଶୈଶବ,

## <◌ ◌> ଐ ଛ

ଗଦ୍ୟଶୈଳୀ, ନୃତ୍ୟଶୈଳୀ,

## ଐ ଉ <◌ ◌>

ବୈଦ୍ୟୁତିକ,

## ଐ ଊ <◌ ◌>

ବୈସୂଚନ,

## ଐ ଓ <◌ ◌>

ବୈରୋଚନି,

## <◌ ◌ ◌> ଐ

ଶନୈଃଶନୈଃ,

## ଅ ଓ ଅ ଅ (◌ ◌ୋ ◌ ◌) ·

ଅଂତ୍ୟୋଦୟ, ଅପୋଗଂଡ, ଅସ୍ତୋଦୟ, ଘଁଟୋତ୍କଚ, ଛଂଦୋବଦ୍ଧ, ତପୋଧନ, ତପୋବଳ, ତପୋବନ, ତପୋଭଂଗ, ତମୋହର, ତ୍ରୟୋଦଶ, ନବୋଦୟ, ନବୋଦ୍ୟମ, ନଭୋରଜଃ, ନମୋନମଃ, ପୟୋଧର, ଫଳୋଦୟ, ବୟୋଧର୍ମ, ମନୋରମ, ମନୋହର, ମହୋଦୟ, ମହୋତ୍ସବ, ମନୋରଥ, ଯଶୋଧର, ଯଶୋବଂତ, ଲଂବୋଦର, ଶତୋତ୍ତର, ଶଢୋତ୍ତର, ସଦ୍ୟୋହତ, ସମ୍ମୋହକ, ସମ୍ମୋହନ, ସଂଯୋଜକ, ସଂଯୋଜନ, ସରୋବର, ସର୍ବୋତ୍ତମ, ସର୍ବୋଦୟ, ସଂଶୋଧକ, ସଂଶୋଧନ, ସହୋଦର, ସରୋଦୟ, ସରୋବର,

## ଅ ଓ <◌ ◌>

ଅଧୋଗତି, ଅଧୋଗାମୀ, ଅଧୋବାୟୁ, ଅଧୋଲୋକ, ଅଯୋଗ୍ୟତା, ଅସ୍ତୋନ୍ମୁଖ, ଅହୋଭାଗ୍ୟ, ଅହୋରାତ୍ର, କଠୋରତା, ତତୋଽଧିକ, ତପୋନିଷ୍ଠ, ତପୋନିଧି, ତମୋଗୁଣ, ତ୍ରୟୋଦଶୀ, ପଦୋନ୍ନତି, ପଂକୋଦ୍ଧାର, ପ୍ରଣୋଦିତ, ପ୍ରମୋଦିତ, ବୟୋଜ୍ୟେଷ୍ଠ, ବୟୋଦୋଷ, ବୟୋବୃଦ୍ଧି, ମନୋବାଂଛା, ମନୋବୃତ୍ତି, ମନୋଭାବ, ମନୋରମା, ମନୋହରୀ, ମହୋଦଧି, ମଂଦୋଦରୀ, ଯଥୋଚିତ, ଯଶୋଧାରା, ଯଶୋମତୀ, ରଜୋଗୁଣ, ରସୋତ୍ତୀର୍ଣ୍ଣ, ସଦ୍ୟୋଜାତ, ସଦ୍ୟୋମାଂସ, ସଂତୋଷିନୀ, ସମ୍ମୋହିନୀ, ସଂଭୋଗିନୀ, ସଂଶୋଧନୀ, ସମ୍ମୋହିତ, ସଂଯୋଜିତ, ସଂଶୋଧିତ, ସଂଯୋଜନା, ସ୍ଥଳୋତ୍ତୀର୍ଣ୍ଣ, ସର୍ବୋପରି, ହତୋତ୍ସାହ, ହର୍ଷୋଚ୍ଛ୍ୱାସ, ହର୍ଷୋତ୍ଫୁଲ୍ଲ, ହର୍ଷୋଲ୍ଲାସ,

## ଆ ଓ ଅ ଅ (◌ା ◌ୋ ◌ ◌)

ଆଂଦୋଳନ, ଆରୋହଣ, ଆରୋପଣ, ଆଲୋଡ଼ନ, ଆତ୍ମୋତ୍ସର୍ଗ, ପାଦୋଦକ, ପ୍ରାଣୋତ୍ସର୍ଗ,

## ଆ ଓ <◌ ◌>

ଆଂଦୋଳିତ, ଆରୋହିତ, ଆରୋପିତ, ଆଲୋଡ଼ିତ, କାଳୋଚିତ, କାଳୋତ୍ତୀର୍ଣ୍ଣ, ଆତ୍ମୋନ୍ନତି, ଆଲୋଚନା, ଆଲୋକିତ, ଆଲୋଚିତ, ପାଠୋଦ୍ଧାର, ପାଠୋନ୍ନତି, ପ୍ରାୟୋଜିତ, ପ୍ରାୟୋଗିକ, ମାଳୋପମା, ଶାସ୍ତ୍ରୋଚିତ, ସାରୋଦ୍ଧାର,

## ଇ ଓ ଅ ଅ (◌ି ◌ୋ ◌ ◌)

ତ୍ରିଲୋଚନ, ନିୟୋଜକ, ନିୟୋଜନ, ବିରୋଧକ, ବିନୋଦନ, ବିସ୍ଫୋରଣ, ବିସ୍ଫୋରକ, ଶିକ୍ଷୋନ୍ନତ,

## ଇ ଓ <◌ ◌>

ତିରୋଟିଆ, ତିରୋଧାନ, ତିରୋହିତ, ନିୟୋଜିତ, ତିଳୋତ୍ତମା, ବିନୋଦିତ, ବିନୋଦିନୀ, ବିଦ୍ୟୋତ୍ସାହୀ, ବିକ୍ଷୋଭିତ, ବିରୋଧିତା, ବିସ୍ଫୋରିତ, ଶିରୋଧାର୍ଯ୍ୟ, ଶିରୋମଣି, ଶିକ୍ଷୋଦ୍ୟୋଗ, ଶିକ୍ଷୋଦ୍ୟୋଗୀ,

## ଈ ଓ <◌ ◌>

ଜୀର୍ଣ୍ଣୋଦ୍ଧାର, ଧୀରୋଦାତ୍ତ, ନୀଳୋତ୍ପଳ,

## ଉ ଓ <◌ ◌>

ଉନ୍ମୋଚକ, ଉନ୍ମୋଚନ, ପୁରୋହିତ, ପୁଷ୍ପୋଦ୍ୟାନ, ଉନ୍ମୋଚିତ, ଶୁଦ୍ଧୋଦନ, କୁପୋଷଣ, ଦୁର୍ଗୋତ୍ସବ,

## ଊ ଓ <◌ ◌>

ସୂର୍ଯ୍ୟୋଦୟ, ସୂତ୍ରୋପମ, ଦୂତୋଚିତ, କୂପୋଦକ, ପୂର୍ବୋତ୍ତର, ସୂତ୍ରୋଦ୍ଧାର, ମୂତ୍ରୋତ୍ସର୍ଗ, ସ୍ଥୂଳୋଦର,

## ଋ ଓ <◌ ◌>

ନୃତ୍ୟୋତ୍ସବ, ବୃକ୍ଷୋତ୍ସର୍ଗ,

## ଏ ଓ <◌ ◌>

ଏକୋଦର, ଏକୋଇଶ, ତେଜୋମୟ, ତେଜୋହୀନ, ତେଜୋଦୀପ୍ତ, ତେଜୋଦୃପ୍ତ, ନେତ୍ରୋତ୍ସବ

## ଐ ଓ <◌ ◌>

ଶୈଳୋଦ୍‌ଭବ, ଚୈତ୍ରୋତ୍ସବ,

## ଔ ଓ <◌ ◌>

ଔଦ୍ୟୋଗିକ, ମୌନୋତ୍ତର,

## <◌ ◌> ଓ <◌>

ପୁରାଣୋକ୍ତ, ହା-ହତୋଽସ୍ମି, ସ୍ୱୀକାରୋକ୍ତି,

## ଅ ଅ ଓ ଅ (◌ ◌ େ◌ା ◌)

ଅବବୋଧ, ଅର୍ଥବୋଧ, ଅବରୋଧ, ଅଂତକୋଷ, ଶବ୍ଦକୋଷ, ଅଶ୍ୱଘୋଷ, ଘରକୋଣ, ସମକୋଣ, ବଡ଼ଲୋକ, ପରଲୋକ, ଭଦ୍ରଲୋକ, ଭଲଲୋକ, ସ୍ୱର୍ଗଲୋକ, ରତ୍ନକୋଷ, ରକ୍ତକୋଷ, କର୍ମଦୋଷ, ଗ୍ରହଦୋଷ, ନରଲୋକ, ମର୍ତ୍ତ୍ୟଲୋକ, ବର୍ଣ୍ଣବୋଧ, ରସବୋଧ, ଧନଲୋଭ, ଜଳସ୍ରୋତ, ରକ୍ତସ୍ରୋତ, ସର୍ବମୋଟ, ବଡ଼ରୋଗ,

## <◌ ◌> ଅ ଅ

ସମାରୋହ, ଦୂରାରୋହ, ଶିଳ୍ପୋଦ୍ୟୋଗ, ଗାଏମୋଟ, ଜ୍ଞାନକୋଷ, ରାଜକୋଷ, ପିତ୍ତକୋଷ, ଚତୁଷ୍କୋଣ, ଅନୁରୋଧ, ପ୍ରତିରୋଧ, ସ୍ୱବିରୋଧ, ମୂଲ୍ୟବୋଧ, ସୁଖବୋଧ, ଲିପିବୋଧ, ଗାଈଗୋଠ, ନଳୀଗୋଡ଼, ଅଭିଯୋଗ, ଉପଯୋଗ, କାମବୋଝ, ନାକଫୋଡ଼, ବହିପୋକ, ଯଥାଯୋଗ୍ୟ, ପଂଚୁଦୋଳ, ଆଳୁଦୋଷ, ସ୍ନେହଡୋର, ପୁତ୍ରମୋହ, ରେଲ୍‌ପୋଲ, ମାଂସଝୋଳ, ଇଂଦ୍ରଲୋକ, ଇହଲୋକ, ଦେବଲୋକ, ଊର୍ଦ୍ଧ୍ୱଲୋକ, ଅଧୋଲୋକ, ନଂଦିଘୋଷ, ଜାମାଯୋଡ଼, ମୁହଁଚୋର, ପାଠଚୋର, କାମଚୋର, କାଠଚୋର, ବାଳଭୋଗ, ସୁଖଭୋଗ, ରୋଗଭୋଗ, ନଦୀସ୍ରୋତ, କାଳସ୍ରୋତ, ମୁଦ୍ରାଦୋଷ, ଜ୍ୟୋତିର୍ଲୋକ, ପୁତ୍ରଶୋକ, ମାତୃଶୋକ, ପିତୃଶୋକ, ପରିଶୋଧ, ପ୍ରତିଶୋଧ, ପୁଣ୍ୟଶ୍ଳୋକ, ଉପଭୋଗ୍ୟ,

## ଅ ଅ ଓ ଆ (◌ ◌ େ◌ା ◌ା)

ଅଂଗଶୋଭା, ଖରସ୍ରୋତା, ମଲ୍ଲଯୋଦ୍ଧା, ବଡ଼ବୋଲା, ଆଗବୋଲା, ପଦ୍ମତୋଳା, ମନଖୋଲା,

## <◌ ◌> ଓ ଆ

ଆଂବତୋଟା, ନାଲିକୋଠା, ରୂପଶୋଭା, ଦେହଶୋଭା, କ୍ଷୀଣସ୍ରୋତା, ଚିରସ୍ରୋତା, ମୃଦୁସ୍ରୋତା, ରୁଦ୍ଧସ୍ରୋତା, ମଧୁବୋଲା, ତେଲବୋଲା, ଚିତ୍ତଚୋରା,

## ଅ ଅ ଓ ଇ (◌ ◌ ◌ୋ ◌ି)

ବରକୋଳି, ରଜଦୋଳି, ବଣଭୋଜି,

## <◌ ◌> ଓ ଇ

ଫୁଲକୋବି, ସ୍ୱଭାବୋକ୍ତି, ସ୍ୱୀକାରୋକ୍ତି, ଗଂଗାଭୋଜି, ଶ୍ରାଦ୍ଧଭୋଜି,

## ଅ ଅ ଓ ଈ (◌ ◌ ◌ୋ ◌ୀ)

ସହଯୋଗୀ, କର୍ମଯୋଗୀ, ହଠଯୋଗୀ, ଜଳରୋଧୀ, ଅର୍ଥଲୋଭୀ, ଧନଲୋଭୀ, ଯଶଲୋଭୀ,

## <◌ ◌> ଓ ଈ

ଉପଯୋଗୀ, ଯକ୍ଷ୍ମାରୋଗୀ, କୁଷ୍ଠରୋଗୀ, ମହାଯୋଗୀ, ବାୟୁରୋଧୀ, ଶ୍ୱାସରୋଧୀ, ଅଶ୍ୱାରୋହୀ, ଦୁଃଖଭୋଗୀ, ତୃଣଭୋଜୀ, ମାଂସଭୋଜୀ, ଖାଦ୍ୟଲୋଭୀ, ଶିଳ୍ପୋଦ୍ୟୋଗୀ, ସବିରୋଧୀ,

## <◌ ◌> ଓ ଉ

ଗାଈଗୋରୁ,

## <◌ ◌> ଓ ଊ

ନୂଆବୋହୂ,

## ଓ ଅ ଅ ଅ (◌ୋ ◌ ◌ ◌)

ଓଜସ୍ୱଳ, କୋକନଦ, କୋଠଘର, କୋଠଧନ, କୋଷଗ୍ରଂଥ, ଗୋବର୍ଦ୍ଧନ, ତୋରପଣ, ମୋହକର, ମୋହବନ୍ଧ, ମୋହମତ୍ତ, ମୋହମଦ, ମୋହବତ, ଯୋଗଫଳ, ଯୋଗବଳ, ଯୋଗଭଂଗ, ଯୋଗଭ୍ରଷ୍ଟ, ଯୋଡ଼ହସ୍ତ, ରୋଗଗ୍ରସ୍ତ, ରୋଷଘର, ଲୋକତଂତ୍ର, ଲୋକଧର୍ମ, ଲୋକବଳ, ଲୋକଭୟ, ଲୋକମତ, ଲୋକଯଶ, ଶୋକକର, ଶୋକଗ୍ରସ୍ତ, ଶୋକତପ୍ତ, ସୋମରସ, ହୋମଯଜ୍ଞ, ତୋସରଫ, ଦୋରବସ୍ତ, ବୋଧଗମ୍ୟ, ରୋମଂଥକ, ରୋମଂଥନ, ଷୋଡ଼ଶକ, ମୋଟଦର, ତୋୟଧର,

## ଓ ଅ <◌ ◌>

ଓଜନିଆ, ଓଜରିଆ, ଓଜସ୍ୱିନୀ, ଓଡ଼ଚଷା, ଓତପ୍ରୋତ, ଓଷଦିଆ, ଓଷଧୀଶ, ଓହରିବା, ଓହଳିବା, କୋକଦେବ, କୋକଶାସ୍ତ୍ର, କୋକବାୟା, କୋଠକାଠ, କୋଠଚାଷ, କୋଠଖଲା, କୋଠଭୋଗ, କୋଡ଼ଗାତ, କୋଡ଼ପୋଛା, କୋଡ଼ମେଇ, କୋଣକିଆ, କୋଣପଶା, କୋଥମିରି, କୋପଦୃଷ୍ଟି, କୋପନୀୟ, କୋମଳତା, କୋମଳାଙ୍ଗ, କୋମଳାଂଗ, କୋମଳାଂଗୀ, କୋମଳାସ୍ଥି, କୋରକିତ, କୋଳନ୍ଥୁଆ, କୋଳଥିଆ, କୋଷକାର, କୋଷପାଳ, କୋଷବୃଦ୍ଧି, କୋଷମୁକ୍ତ, କୋଷଶୁଦ୍ଧି,

କ୍ଷୋଭହୀନ, ଖୋଳତାଡ଼, ଗୋଠଛଡ଼ା, ଗୋଠବଣା, ଗୋଡ଼କନା, ଗୋଡ଼ଖଡୁ, ଗୋଡ଼ଗଂଠି, ଗୋଡ଼ଘଷା, ଗୋଡ଼ଧୁଆ, ଗୋଡ଼ଫୁଲା, ଗୋଡ଼ବଳା, ଗୋଡ଼ମୁଣା, ଗୋଡ଼ମୁଦି, ଗୋଡ଼ମୋଡ଼ା, ଗୋତ୍ରଚ୍ୟୁତ, ଗୋତ୍ରଚ୍ୟୁତି, ଗୋତ୍ରତ୍ୟାଗ, ଗୋତ୍ରଭୁକ୍ତ, ଗୋତ୍ରମାରୁ, ଗୋତ୍ରହୀନ, ଗୋପକନ୍ୟା, ଗୋପକେଳି, ଗୋପନାରୀ, ଗୋପନୀୟ, ଗୋପପୁର, ଗୋପବଂଧୁ, ଗୋପବଧୂ, ଗୋପଲକ୍ଷ୍ମୀ, ଗୋଲଂଦାଜ, ଗୋଳମାଳ, ଘୋଳଦହି, ଘୋଷଣୀୟ, ଘୋଷବତୀ, ଘୋଷଯାତ୍ରା, ଚୋରମୁହାଁ, ଛୋଟମନ, ଛୋଟଲାଟ୍, ଛୋଟଲୋକ, ଛୋଟଲୋକି, ଜୋଗଣିଆ, ଜୋରଦାର, ଝୋଳଗିନା, ଠୋ-ପଟାକ୍, ତୋରବଳା, ତୋପଖାନା, ତୋପଧ୍ୱନି, ତୋପଚିନି, ତୋୟନିଧି, ତୋୟଫଳା, ତୋଷଣୀୟ, ଦୋଗଛିଆ, ଦୋଫସଲି, ଦୋଷଗ୍ରାହୀ, ଦୋଷଦର୍ଶୀ, ଦୋଷଦୁଷ୍ଟ, ଦୋଷସିଦ୍ଧ, ଦୋଷହୀନ, ଦୋସମାଳି, ଦୋହଦିନୀ, ଦୋହନୀୟ, ପୋକଖିଆ, ପୋକଯୋକ, ପୋଖରାଜ, ପୋଡ଼ପିଠା, ପୋଷକତା, ପୋଷକତ୍ୱ, ପୋଷ୍ୟବର୍ଗ, ପୋଷ୍ୟଗ୍ରାମ, ପୋଷ୍ୟପୁତ୍ର, ପୋସ୍ତଦାନା,

ବୋଧନୀୟ, ବୋଧଯୁକ୍ତ, ବୋଧଶକ୍ତି, ବୋଧଶୂନ୍ୟ, ବୋଧହୀନ, ବୋରଝାଂଜି, ବୋଲକାରୀ, ବ୍ୟୋମକେଶ, ବ୍ୟୋମଚାରୀ, ବ୍ୟୋମଯାନ, ଭୋଗବତୀ, ଭୋଗତୃଷ୍ଣା, ଭୋଗଭୂମି, ଭୋଗସ୍ଥାନ, ଭୋଜନୀୟ, ଭୋଜବାଜି, ଭୋଟ୍‌କର୍ମୀ, ଭୋଟ୍‌ଦାତା, ଭୋଟ୍‌ଦାନ, ଭୋଟ୍‌କେଂଦ୍ର, ଭୋଟ୍‌ପତ୍ର, ଭୋଟ୍‌ପ୍ରାର୍ଥୀ, ମୋଟକଥା, ମୋଟଦର, ମୋଟମୂଲ୍ୟ, ମୋହକରୀ, ମୋହକାରୀ, ମୋହନିଆ, ମୋହନୀୟ, ମୋହବତି, ମୋହରିର, ମୋହତଂଦ୍ରା, ମୋହଦୃଷ୍ଟି, ମୋହନାଶ, ମୋହମାୟା, ମୋହମୁକ୍ତ, ମୋହଶୂନ୍ୟ, ମୋହହୀନ, ମୋହ୍ୟମାନ, ଯୋଗଣିଆ, ଯୋଗକ୍ଷେମ, ଯୋଗକନ୍ୟା, ଯୋଗରୂଢ଼, ଯୋଗନିଦ୍ରା, ଯୋଗକ୍ଷେତ୍ର, ଯୋଗପୀଠ, ଯୋଗଶାସ୍ତ୍ର, ଯୋଗବାହୀ, ଯୋଗଦାନ, ଯୋଗଗୁରୁ, ଯୋଗମାର୍ଗ, ଯୋଗବାହ, ଯୋଗସିଦ୍ଧ, ଯୋଗସିଦ୍ଧି, ଯୋଗସୂତ୍ର, ଯୋଗ୍ୟପାତ୍ର, ଯୋଡ଼ସଂଖ୍ୟା, ଯୋଡ଼ହୀନ, ଯୋଜନୀୟ, ରୋଗଣିଆ, ରୋଗଶଯ୍ୟା, ରୋଗଚର୍ଯା, ରୋଗଜୀର୍ଣ୍ଣ, ରୋଗଭୋଗ, ରୋଗମୁକ୍ତ, ରୋଗମୁକ୍ତି, ରୋଗଶଯ୍ୟା, ରୋଗଶାଂତି,

ରୋଗଶୋକ, ରୋଗହୀନ, ରୋଜଗାର, ରୋଧନୀୟ, ରୋପଣୀୟ, ରୋଷଣିଆ, ରୋଷବହ୍ନି, ରୋଷଦୀପ୍ତ, ଲୋକକଳା, ଲୋକକଥା, ଲୋକଗାଥା, ଲୋକଗୀତ, ଲୋକଗୀତି, ଲୋକଗ୍ରାହ୍ୟ, ଲୋକନାଥ, ଲୋକନୀତି, ଲୋକନୃତ୍ୟ, ଲୋକନାଟ୍ୟ, ଲୋକପାଳ, ଲୋକପ୍ରିୟ, ଲୋକବାକ, ଲୋକଭାଷା, ଲୋକମାତା, ଲୋକମାନ୍ୟ, ଲୋକମୁଖ, ଲୋକଲଜ୍ଜା, ଲୋକଲାଜ, ଲୋକଶିକ୍ଷା, ଲୋକଶିଳ୍ପ, ଲୋକଶ୍ରୁତି, ଲୋକସଂଖ୍ୟା, ଲୋକସଭା, ଲୋକସାନ୍, ଲୋକହିତ, ଲୋଧ୍ରରେଣୁ, ଲୋପନୀୟ, ଲୋଭକରୀ, ଲୋଭକାରୀ, ଲୋଭନୀୟ, ଲୋମକୂପ, ଲୋମରାଜି, ଲୋମରାଶି, ଲୋମଗୁଚ୍ଛ, ଲୋମରେଖା, ଲୋମଲତା, ଲୋମହୀନ, ଲୋଳଦୃଷ୍ଟି, ଲୋହକିଟ୍ଟ, ଲୋହଚୂର୍ଣ୍ଣ, ଲୋହନାଳ, ଲୋହପୃଷ୍ଠ, ଲୋହବର, ଲୋହଶଂକୁ, ଶୋକକ୍ଲିଷ୍ଟ, ଶୋକକ୍ଲେଶ,

ଶୋକଗାଥା, ଶୋକଗୀତି, ଶୋକଜୀର୍ଣ୍ଣ, ଶୋକଜ୍ୱାଳା, ଶୋକତାପ, ଶୋକନାଶ, ଶୋକବାର୍ତ୍ତା, ଶୋକଯାତ୍ରା, ଶୋକଶୂନ୍ୟ, ଶୋକହୀନ, ଶୋଚନୀୟ, ଶୋଧନୀୟ, ଶୋଭନୀୟ, ଶୋଷଣୀୟ, ଶୋଷୟିତା, ଶୋଷୟିତ୍ରୀ, ଶ୍ଳୋକକର୍ତ୍ତା, ଶ୍ଳୋକଭାଷ୍ୟ, ଶ୍ଳୋକସୂଚି, ଶ୍ଳୋକସଂଖ୍ୟା, ଷୋଳଅଣା, ଷୋଳପାଲା, ଷୋଳକଳା, ଷୋଡ଼ଶାଂଶ, ସୋମବାର, ସ୍ରୋତସ୍ୱତୀ, ସ୍ରୋତସ୍ୱାନ୍, ସ୍ରୋତସ୍ୱିନୀ, ହୋମକୁଂଡ, ହୋମଚରୁ, ହୋମସ୍ଥଳୀ, ହୋମଶିଖା,

## ଓ ଆ ଅ ଅ (◌ୋ ◌ା ◌ ◌)

କୋଜାଗର, କୋଳାଗ୍ରତ, କୋଷାଧ୍ୟକ୍ଷ, ଖୋସାମତ, ଖୋଲାମନ, ଗୋତ୍ରାଂତର, କୋଠାଘର, ଘୋରାସଜ, ତୋଷାମଦ, ଦୋଷାକର, ଦୋଷାବହ, ପୋତାଶ୍ରୟ, ପ୍ରୋତ୍ସାହକ, ପ୍ରୋତ୍ସାହନ, ଭୋଗାସକ୍ତ, ମୋହାଚ୍ଛନ୍ନ, ଯୋଗାସନ, ଯୋଗାଳୟ, ରୋଷାନଳ, ରୋମାଂଚକ, ଲୋକାଂତର, ଲୋକାଳୟ, ଲୋକାରଣ୍ୟ, ଶୋକାଚ୍ଛନ୍ନ, ଶୋକାନଳ, ଶୋଭାଂଜନ, ଶୋଭାୟନ, ଶୋଭାକର, ଶୋଭାମୟ, ଶ୍ଳୋକାତ୍ମକ, ଶ୍ଳୋକାଷ୍ଟକ, ହୋମାନଳ,

## ଓ ଆ <◌ ◌>

ଓଟାରିଆ, ଓଟାରିବା, ଓଦାଳିଆ, ଓପାଡ଼ିବା, ଓଲାଉଠା, ଓଳାଇବା, ଓସାରିଆ, ଓହ୍ଲାଇବା, କୋଠାବାଡ଼ି, କୋଠାତୋଳା, କୋଷାଗାର, କୋଷାଧ୍ୟକ୍ଷା, ଖୋଜାଇବା, ଖୋଜାଲୋଡ଼ା, ଖୋଲାଇବା, ଖୋଳାଇବା, ଖୋଲାଖୋଲି, ଖୋଲାଚିଠି, ଖୋଲାମେଲା, ଖୋଲାଦ୍ୱାର, ଖୋଲାଭାବ, ଖୋସାମତି, ଗୋଛାଇବା, ଗୋଟାଇବା, ଗୋଡ଼ାଣିଆ, ଗୋଡ଼ାଇବା, ଗୋପାଂଗନା, ଗୋପାଳିଆ, ଗୋପାଳୁଣୀ, ଗୋଳାଇବା, ଗୋଲାକାର, ଗୋଲାକୃତି, ଗୋଳାଗୁଳି, ଗୋଷ୍ଠାଗାର, ଗୋସାମଣୀ, ଘୋଡ଼ାଗାଡ଼ି, ଘୋଡ଼ାଚଢ଼ା, ଘୋଡ଼ାଦୌଡ଼, ଘୋଡ଼ାଡିଂବ, ଘୋଡ଼ାନାଚ, ଘୋଡ଼ାଶାଳ, ଘୋଡ଼ାନାଲ, ଘୋଡ଼ାବାଳ, ଘୋଡ଼ାମୁହାଁ, ଘୋଡ଼ାଇବା, ଘୋଷାଡ଼ିବା, ଘୋଷାରିବା, ଘୋଷାପଦ, ଘୋଷାପାଠ, ଚୋଠାଗିରି, ଚୋପାଛଡ଼ା, ଚୋରାମୁହାଁ, ଚୋରାମୁହାଁ, ଚୋରାଇବା, ଚୋରାବାଲି, ଚୋରାବତି, ଚୋରାବାଟ, ଚୋଷଣୀୟ, ଛୋଟାଇବା, ଜୋତାଫିତା, ଟୋକାଳିଆ, ତୋଷାମଦି, ତୋଷାମଦୀ, ଦୋଚାରୁଣୀ, ଦୋଫାଂକିଆ,

ଦୋଫାଳିଆ, ଦୋଳାଇବା, ଦୋଳାୟିତ, ଦୋଷାଦୋଷ, ଦୋଷାନ୍ୱେଷୀ, ଦୋଷାରୋପ, ଦୋଷାର୍ପିତ, ଧୋକାବାଜ୍, ପୋଛାକନା, ପୋଡ଼ାମାଟି, ପୋଡ଼ାଜଳା, ପୋଡ଼ାମୁହାଁ, ପୋଡ଼ାମୁହାଁ, ପୋଟାଳିବା, ପୋତାରୋହୀ, ପୋଷାଇବା, ପ୍ରୋତ୍ସାହିକା, ପ୍ରୋତ୍ସାହିତ, ପ୍ରୋତ୍ସାହିନୀ, ଫୋଡ଼ାଫୋଡ଼ି, ଫୋପାଡ଼ିବା, ବୋଧାତୀତ, ବୋବାଳିଆ, ବୋମାମାଡ଼, ବୋଲାବୋଲି, ଭୋଗାସକ୍ତି, ମୋଟାବୁଦ୍ଧି, ମୋଟାମୋଟି, ମୋଟାସୋଟା, ମୋଚ୍ଛାୟିତ, ଯୋଗାଇବା, ଯୋଗାଡ଼ିଆ, ଯୋଗାଣିଆ, ଯୋଗାଭ୍ୟାସ, ଯୋଗାଯୋଗ, ଯୋଗାରୂଢ଼, ଯୋଗାଳୟ,

ଯୋଗାସୀନ, ରୋଗାକ୍ରାଂତ, ରୋମାଂଚିତ, ରୋଷାନ୍ୱିତ, ରୋଷାବିଷ୍ଟ, ରୋମାବଳି, ରୋମାବୃତ, ଲୋକାଚାର, ଲୋକାତୀତ, ଲୋକାକୀର୍ଣ, ଲୋମାଂକୁର, ଲୋମାବଳି, ଲୋମାବୃତ, ଲୋପାମୁଦ୍ରା, ଲୋଭାନ୍ୱିତ, ଲୋଭାବିଷ୍ଟ, ଲୋଳାପାଂଗୀ, ଶୋକାକୁଳ, ଶୋକାବେଗ, ଶୋକାତୁର, ଶୋକାପ୍ଲୁତ, ଶୋକାବିଷ୍ଟ, ଶୋକାବେଶ, ଶୋଭାନିଧି, ଶୋଭାନ୍ୱିତ, ଶୋଭାଯାତ୍ରା, ଶୋଭାଯାତ୍ରୀ, ଶୋଭାମୟ, ଶୋଭାମୟୀ, ଶୋଭାଶାଳୀ, ଶୋଭାଶୂନ୍ୟ, ଶୋଭାହୀନ, ଶୋଭାବତୀ, ଶୋଭାଧାର, ଶ୍ଳୋକାନ୍ୱିତ, ଶ୍ଳୋକାବୃତ୍ତି, ସୋପାନକ, ସୋପାଧିକ, ସ୍ୱୋପାର୍ଜନ, ସ୍ୱୋପାର୍ଜିତ,

## ଓ ଇ ଅ ଅ (◌ୋ ◌ି ◌ ◌)

ଚୋରିଧନ, ବୋଧିସତ୍ତ୍ୱ, ଜ୍ୟୋତିଶ୍ଚକ୍ର, ଜ୍ୟୋତିଷ୍ପଥ,

## ଓ ଇ <◌ ◌>

ଓକିଲାତି, ଓକିଲାତୀ, ଓଳିକିଆ, ଓଳିପାଣି, ଓଡ଼ିଆଣି, ଓଡ଼ିଆଣୀ, ଓରିମାନା, କୋଟିକଣ୍ଠ, କୋଟିନିଧି, କୋଟିପତି, କୋଟିବନ୍ଧ, ଗୋଛିକଟା, ଗୋଛିକାର, ଗୋଟିକିଆ, ଗୋଟିପୁଅ, ଗୋଟିପୋକ, ଗୋଟିଖେଳ, ଗୋଡ଼ିବାଣ, ଗୋଡ଼ିମାଟି, ଗୋଡ଼ିଶିଂବ, ଜ୍ୟୋତିର୍ବେତ୍ତା, ଜ୍ୟୋତିର୍ବିଦ୍ୟା, ଜ୍ୟୋତିର୍ମୟ, ଜ୍ୟୋତିର୍ମୟୀ, ଜ୍ୟୋତିଷିକ, ଜ୍ୟୋତିଷ୍ମତୀ, ଜ୍ୟୋତିଷ୍ମାନ୍, ପୋଥିପାଠ, ବୋଇତାଳୁ, ଚୋରିନାରୀ, ଚୋରିବାଟ, କୋଠିଆଣୀ, ଧୋତିଯୋଡ଼, ନୋଳିଆଣୀ, ବୋଧିଦ୍ରୁମ, ଯୋନିକୀଟ, ଯୋନିମୁକ୍ତ, ମୋତିଚୂର, ମୋତିଜାଲି, ମୋତିମାଳ, ମୋତିଲାଲ, ମୋତିହାର, ସୋରିଷିଆ, ଭୋଜିଭାତ, ମୋଚିସାହି, ଶୋଣିତାକ୍ତ, ଶୋଣିତାଭ, ଶୋଣିତାର୍ଦ୍ର,

## ଓ ଈ <◌ ◌>

କୋଟୀଶ୍ୱର, ଗୋପୀନାଥ, ଗୋପୀଯଂତ୍ର, ରୋଗୀଯାନ, ଯୋଗୀଶ୍ୱର, ଗୋଷ୍ଠୀଗତ, ଗୋଷ୍ଠୀତଂତ୍ର, ଗୋଷ୍ଠୀବର୍ଗ, ଗୋଷ୍ଠୀବାଦ, ଗୋଷ୍ଠୀଭୁକ୍ତ, ଗୋଷ୍ଠୀସ୍ୱାର୍ଥ,

## ଓ ଉ <◌ ◌>

ଦୋମୁଂଡିଆ, ଗୋରୁଗାଈ, ଗୋରୁଗାଡ଼ି, ଗୋରୁଚୋର, ଗୋରୁଜଗା, ଗୋରୁଗୋଠ, ଗୋରୁପଲ, ଗୋରୁମୁହାଁ,

## ଓ ଊ <◌ ◌>

ବୋହୂଚୋରି,

## ଓ ଏ <◌ ◌>

ଓଖେଇତି, ଯୋଗେଶ୍ୱର, ଯୋଗେଶ୍ୱରୀ, ସୋମେଶ୍ୱର,

## ଓ ଓ <◌ ◌>

ଗୋରୋଚନା, ଲୋକୋତ୍ତର, ଶୋକୋଚ୍ଛ୍ୱାସ, ଶୋକୋତ୍ତୀର୍ଣ୍ଣ, ଶୋକୋନ୍ମତ୍ତ, ଶୋକୋନ୍ମାଦ,

## ଔ ଅ ଅ ଅ (◌ୌ ◌ ◌ ◌)

ପୌରଜନ, ପୌରସଂଘ, ଭୌମକର, ମୌନବ୍ରତ, ଶୌର୍ଯ୍ୟଚକ୍ର,

## ଔ ଅ <◌ ◌>

ଔଦରିକ, ଔଷଧାୟ, ଗୌରବିତ, ତୌର୍ଯ୍ୟତ୍ରିକ, ନୌକରାଣୀ, ନୌକରିଆ, ପୌତ୍ତଳିକ, ପୌନଃପୁନ୍ୟ, (ପୌନଃପୁନିକ), ପୌରନୀତି, ପୌରସଭା, ପୌର୍ଣ୍ଣମାସୀ, ପୌଢ଼ଶିକ୍ଷା, ବୌଦ୍ଧପୀଠ, ରୌଦ୍ରତାପ, ରୌପ୍ୟମୁଦ୍ରା, ଲୌହସାର, ଯୌନକ୍ରିୟା, ଯୌନଶକ୍ତି, ଶୌର୍ଯ୍ୟବାନ୍, ଶୌର୍ଯ୍ୟଶାଳୀ, ସୌଗଂଧିକ, ସୌଭଦ୍ରେୟ, ସୌମ୍ୟକାଂତ, ସୌରଭିତ,

## ଔ ଆ <◌ ◌>

ଔଦାସୀନ୍ୟ, ଔପାଧିକ, ନୌକାଡୁବି, ନୌକାଜୀବୀ, ନୌବାହିନୀ, ପୌରାଣିକ, ପୌରାଣିକୀ, ପ୍ରୌଢ଼ାବସ୍ଥା, ପ୍ରୌଢ଼ାଳୟ, ପ୍ରୌଢ଼ାଶ୍ରମ, ପ୍ରୌଢ଼ାଶ୍ରୟ, ଯୌନାଚାର, ଯୌନାସକ୍ତ, ଶୌଚାଗାର, ଶୌଚାଳୟ, ଶୌଚାଭ୍ୟାସ, ଶୌଚାସନ, ସୌଦାମିନୀ, ସୌସାଦୃଶ୍ୟ,

## ଔ ଇ <◌ ◌>

ତୌଳିକିକ, ବୌଦ୍ଧିକତା, ମୌଳିକତା, ଯୌକ୍ତିକତା, ଲୌକିକତା, କୌଳିକତା, ରୌହିଣେୟ, ସୌରିବଂଧୁ, ସୌରିବାର,

## ଔ ଈ <◌ ◌>

ସୌଖୀନତା,

## ଔ ଉ <◌ ◌>

କୌଟୁଂବିକ, କୌତୁକିଆ, ପୌରୁଷେୟ, ସୌକୁମାର୍ଯ୍ୟ,

## ଔ ଊ <◌ ◌>

କୌତୂହଳ, କୌତୂହଳୀ, ମୌହୂର୍ତ୍ତିକ,

## ଔ ଏ <◌ ◌>

ଗୌଡ଼େଶ୍ୱର,

## ଔ ଐ <◌ ◌>

ନୈଃସୈନିକ,

## ଔ ଓ <◌ ◌>

ଔଦ୍ୟୋଗିକ, ଔଦ୍ୟୋଗିକୀ, ପୌରୋହିତ୍ୟ, ଭୌଗୋଳିକ, ଯୌଥୋଦ୍ୟମ, ଯୌଥୋଦ୍ୟୋଗ, ରୌଦ୍ରୋଜ୍ଜ୍ୱଳ,

## ଅ ଔ <◌ ◌>

ଅଲୌକିକ, ଅନୌଚିତ୍ୟ, ଅପୌରୁଷ, ଅଯୌକ୍ତିକ, ଅସୌଜନ୍ୟ,

☆☆☆

# ବହୁଅକ୍ଷରୀ ଶବ୍ଦାବଳି

ଯେଉଁ ପ୍ରକାର ଓଡ଼ିଆ ଭାଷା କହି କୋଟି କୋଟି ଲୋକ ନିଜର ମନର କଥା, ଭାବ ପ୍ରକାଶ କରଂତି, ତହିଁରେ ବ୍ୟବହୃତ ଅଧିକାଂଶ ଶବ୍ଦର ଅକ୍ଷର ସଂଖ୍ୟା ଦୁଇ, ତିନି କି ଚାରି ହୋଇଥାଏ। ତହିଁରୁ ଅଧିକ ସଂଖ୍ୟକ ଅକ୍ଷର ଥିବା ଶବ୍ଦଗୁଡ଼ିକ ମଧ୍ୟରୁ ଅଧିକାଂଶ ସଂଧି ସମାସ-ଘଟିତ ଯୌଗିକ ଶବ୍ଦ କିଂବା ସଂସ୍କୃତ ଶବ୍ଦ। ଅନେକ ଶବ୍ଦକୁ ଏକାଠି କରି ଲଂବା ଲଂବା, କାନକୁ ମଧୁର ଓ ଓଜନିଆ ଶୁଭୁଥିବା ବହୁଅକ୍ଷରୀ ଶବ୍ଦ ତିଆରି କରାଯାଇଛି ଏବଂ ଆହୁରି ମଧ୍ୟ କରାଯାଇପାରେ।

କିଂତୁ ଶ୍ରୋତା ବା ପାଠକଂକୁ ଏ ଭଳି ଶବ୍ଦର ଅର୍ଥ ବୁଝିବା ପାଇଁ ନାନା ପ୍ରକାର ଅସୁବିଧା ଭୋଗିବାକୁ ପଡ଼ିଥାଏ। ଯେଉଁ ଶବ୍ଦଗୁଡ଼ିକୁ ଆମେ କେବଳ ଅଭିଧାନ, ବ୍ୟାକରଣ ଓ ସାହିତ୍ୟ ବହିରେ ଦେଖିଥାଉଁ, ନିଜେ କେବେ କହୁ ନ ଥାଉଁ କି ଅନ୍ୟ କେହି କହିବାର ଶୁଣି ନ ଥାଉଁ, ସେହି ଶବ୍ଦଗୁଡ଼ିକର ପାଲରେ ନ ପଡ଼ିବା ହିଁ ଭଲ। ଏ ଭଳି ଶବ୍ଦ କଥାରେ କି ଲେଖାରେ ବ୍ୟବହାର କଲେ ଆମର ବାଣୀ ଓ ବାର୍ତ୍ତା ଅବୋଧ୍ୟ ହୋଇପଡ଼େ। ଆମର ମନର କଥା ଧ୍ୱନିତ ଓ ଲିଖିତ ହେଲେ ସୁଦ୍ଧା ପ୍ରକାଶିତ ହୋଇପାରେନାହିଁ।

ଏକ-ଦୁଇ-ତିନି-ଚାରି-ଅକ୍ଷରୀ ଶବ୍ଦଗୁଡ଼ିକର ଗଠନଗତ ବହୁରୂପ ସହିତ ଓଡ଼ିଆ କହୁଥିବା ଓ ଲେଖୁଥିବା ଲୋକେ ସୁପରିଚିତ। ଏବେ ଚାରିରୁ ଅଧିକ ଅକ୍ଷର ଥିବା କେତେକ ଶବ୍ଦ ଦେଖିନେବା।

ଏଠାରେ ଶବ୍ଦ ଖୋଜିବା କାମକୁ ସହଜ କରିବା ପାଇଁ ଶବ୍ଦଗୁଡ଼ିକୁ ଶେଷ ଅକ୍ଷର କ୍ରମରେ ସଜାଇ ଦିଆଯାଇଛି। ଏଥିରୁ ଏ ପ୍ରକାରର ଶବ୍ଦଗୁଡ଼ିକର ଗଠନସୂତ୍ର ବୁଝିବା ମଧ୍ୟ ଏବେ ସହଜତର ହେବ ବୋଲି ଆଶା କରାଯାଏ।

ଯେଉଁମାନେ ଏଠାରେ ତାଲିକାବଦ୍ଧ ହୋଇଥିବା ଶବ୍ଦ କହଂତି ବା ଲେଖଂତି, ସେମାନେ ସେଥିଯୋଗୁଁ 'ଜ୍ଞାନୀ, ପଂଡିତ, ମେଧାବୀ, ପ୍ରଜ୍ଞାବାନ୍' ବୋଲାଇବାର କୌଣସି କାରଣ ନାହିଁ। ସେମାନେ କଠିନ ଶବ୍ଦ ବ୍ୟବହାର ଦ୍ୱାରା ନିଜର ମନୋଭାବକୁ କେବଳ ଲୁଚାଇପାରଂତି।

# ପାଂଚଅକ୍ଷରୀ ଶବ୍ଦାବଳି

................................କ................................

ମରଣାଂତକ, ବିୟୋଗାଂତକ, ମିଳନାଂତକ, ପରିବ୍ରାଜକ, ସାଂବତ୍ସରିକ, ଆଭ୍ୟଂତରିକ, ପାରଂପରିକ, ପାରିବାରିକ, ବ୍ୟାବହାରିକ, ହାସ୍ୟୋଦ୍ଦୀପକ, କାମୋଦ୍ଦୀପକ, ଭାବୋଦ୍ଦୀପକ, ପାରିତୋଷିକ, ପାରିପାର୍ଶ୍ୱିକ, ପାରିଭାଷିକ, ପାରିଶ୍ରମିକ, ବ୍ୟାବସାୟିକ, ପ୍ରାଶାସନିକ, ପ୍ରାଗାଧୁନିକ, ଗାଣତଂତ୍ରିକ, ପ୍ରାତ୍ନତତ୍ତ୍ୱିକ, ସାମାଂତରିକ, ଆଂତର୍ଜାତିକ, ସାର୍ବଜନିକ, ସାର୍ବକାଳିକ, ଆନୁଷଂଗିକ, ଅବୈଧାନିକ, ସାଂବିଧାନିକ, ରାସାୟନିକ, କୃପମଂଡୁକ, ବିପରୀତାର୍ଥକ, ଧର୍ମୋପାସକ, ବ୍ୟବସ୍ଥାପକ, ତୁଳନାତ୍ମକ, ସଂଶୟାତ୍ମକ, ତିମିରାଲୋକ, ବର୍ଣ୍ଣନାତ୍ମକ, ନକାରାତ୍ମକ, ପ୍ରତୀକାତ୍ମକ, ସକାରାତ୍ମକ, ସାରଗର୍ଭକ, ଜ୍ଞାନଗର୍ଭକ, ରସଗର୍ଭକ, ପରିଚାୟକ, ପରିବେଷକ, ପର୍ଯବେକ୍ଷକ, କୃତାଭିଷେକ, ସାମୁଦାୟିକ, ମେଷପାଳକ, ଚିଂତାଜନକ, ବିପଜ୍ଜନକ, ଲଜ୍ଜାଜନକ, ଲାଭଜନକ, ଭାଷାଭିତ୍ତିକ, କୃଷିଭିତ୍ତିକ, ଶିଳ୍ପଭିତ୍ତିକ, ଲିଂଗଭିତ୍ତିକ, ଜାତିଭିତ୍ତିକ, ଅନ୍ୟମନସ୍କ, ସ୍ଥିରମନସ୍କ, କଳାମନସ୍କ, ବାୟୁରୋଧକ, ଜଳରୋଧକ, ତାପରୋଧକ, ବୃଦ୍ଧିସୂଚକ, ବିଘ୍ନସୂଚକ, ଜୟସୂଚକ, ପକ୍ଷପୋଷକ, ଅଭିଭାବକ, ଆପରାଧିକ, ଆଭିଧାନିକ, ଆଭ୍ୟୁଦୟିକ, କାମୋତ୍ତେଜକ, ଚିତ୍ତୋତ୍ତୋଳକ, ଭାରୋତ୍ତୋଳକ, ଧାରାବାହିକ, ଅଭିସାରିକା, ଅବବାହିକା,

................................କ୍ଷ................................

ଯୁକ୍ତିସାପେକ୍ଷ, କାର୍ଯୋପଲକ୍ଷେ, ଅଫଳାକାଂକ୍ଷୀ,

................................ଖ................................

ଏକାଭିମୁଖୀ, ସର୍ବତୋମୁଖୀ, ମରଣୋନ୍ମୁଖ, କର୍ମବିମୁଖ, ଶ୍ରମବିମୁଖ, ଭୋଗବିମୁଖ, ପୁଂଖାନୁପୁଂଖ, ଉଦୟୋନ୍ମୁଖ,

................................ଗ................................

ବହିର୍ବିଭାଗ, ସୂର୍ଯୋପରାଗ, ଅଂତର୍ବିଭାଗ, ପ୍ରତ୍ୟଭିଯୋଗ, ଉଲ୍ଲେଖଯୋଗ୍ୟ, ପ୍ରଶଂସାଯୋଗ୍ୟ, ଗ୍ରହଣଯୋଗ୍ୟ, ସ୍ମରଣଯୋଗ୍ୟ, ପ୍ରମାଣଯୋଗ୍ୟ, ଭରସାଯୋଗ୍ୟ, ବିଶ୍ୱାସଯୋଗ୍ୟ, ବିଚାରଯୋଗ୍ୟ, ପ୍ରୟୋଗଯୋଗ୍ୟ, ଅମନୋଯୋଗୀ, ଯୁଗୋପଯୋଗୀ, ସ୍ଥଳୋପଯୋଗୀ, କର୍ମୋପଯୋଗୀ, କାଳୋପଯୋଗୀ, କାର୍ଯୋପଯୋଗୀ, ପାତ୍ରୋପଯୋଗୀ, ଶିକ୍ଷାନୁରାଗୀ,

................................ଘ................................

ଅନତିଦୀର୍ଘ,

................................ଚ................................

ମରଣାଶୌଚ, ପର୍ଯାୟବାଚୀ,

........................................ଜ........................................

ଶୈଳାଧିରାଜ, ରାଜାଧିରାଜ, ବାସରସଜା, ସମରସଜା, ବହିର୍ବାଣିଜ୍ୟ, ଉଚ୍ଛିଷ୍ଟଭୋଜୀ,

........................................ଟ........................................

ଅଭିନିବିଷ୍ଟ, ପ୍ରଚ୍ଛଦପଟ, ମାନସପଟ,

........................................ଠ........................................

ସଂଖ୍ୟାଗରିଷ୍ଠ, ଲବ୍ଧପ୍ରତିଷ୍ଠ, କର୍ତବ୍ୟନିଷ୍ଠ,

........................................ଣ........................................

ବୈୟାକରଣ, ବହିଷ୍କରଣ, ଅବରୋହଣ, ଅଂତଃକରଣ, ଅଧିକରଣ, ପଂଜୀକରଣ, ପ୍ରାଧିକରଣ, ନବୀକରଣ, ଏକୀକରଣ, ଦୃଢ଼ୀକରଣ, ଆର୍ଦ୍ରୀକରଣ, ବନୀକରଣ, କେଂଦ୍ରୀକରଣ, ତୁଷ୍ଟୀକରଣ, ପୁଷ୍ଟୀକରଣ, ବର୍ଗୀକରଣ, ବଶୀକରଣ, ବୈଧୀକରଣ, ସଜ୍ଜୀକରଣ, ସ୍ଥିରୀକରଣ, ସ୍ୱଷ୍ଟୀକରଣ, ଅପେକ୍ଷମାଣ, ପ୍ରତୀକ୍ଷମାଣ, ପରିବେଷଣ, ରୂପାଂତରଣ, ଭାଷାଂତରଣ, ସ୍ଥାନାଂତରଣ, ଛିଦ୍ରାନ୍ୱେଷଣ, ଶବ୍ଦାନ୍ୱେଷଣ, ଶବ୍ଦାଂତରଣ, ଶିରୋଭୂଷଣ, ସ୍ୱର୍ଣ୍ଣାଭୂଷଣ, ସମାକର୍ଷଣ, ଶବ୍ଦୋଚ୍ଚାରଣ, ଶଯ୍ୟାସ୍ତରଣ, ଶିଷ୍ଟାଚରଣ, ଶୁଦ୍ଧାଚରଣ, କଦାଚରଣ, ଶ୍ଳୋକୋଚ୍ଚାରଣ, ମିଥ୍ୟାଚରଣ, ମିଥାରୋପଣ, ଭ୍ରଷ୍ଟାଚରଣ, ଅଭିଭାଷଣ, ଗଜୋଦ୍ଧରଣ, ଜ୍ୟୋତିରିଂଗଣ, ତାତ୍ପର୍ଯ୍ୟପୂର୍ଣ୍ଣ, ଅଧିରୋହିଣୀ, ପରୀକ୍ଷୋତ୍ତୀର୍ଣ୍ଣ, ପୃଥକ୍‌କରଣ, ବଂଧ୍ୟାକରଣ, ଜଗତ୍‌କରଣ, ବିଦ୍ୟୁତ୍‌କରଣ, ସପ୍ନପ୍ରବଣ,

........................................ତ........................................

ବର୍ଣ୍ଣନାତୀତ, ବଚନାତୀତ, କଳ୍ପନାତୀତ, ସଂଶୟାତୀତ, ସ୍ମରଣାତୀତ, ସଂଦେହାତୀତ, ଆଶାତିରିକ୍ତ, ମାତ୍ରାତିରିକ୍ତ, ଅନଭୀପ୍‌ସିତ, ଅପ୍ରତ୍ୟାଶିତ, ଅନାଲୋଚିତ, ଅନାମଂତ୍ରିତ, ଅନିମଂତ୍ରିତ, ଅନିୟଂତ୍ରିତ, ଅନାସ୍ୱାଦିତ, ଅଭିଳଷିତ, ଅନଭିପ୍ରେତ, ଅପରିଜ୍ଞାତ, ସ୍ୱତଃପ୍ରବୃତ୍ତ, ଶୋକାଭିଭୂତ, ନିଦ୍ରାଭିଭୂତ, ଶ୍ରଦ୍ଧାବନତ, ସରଳୋନ୍ନତ, ଲଜ୍ଜାବନତ, ଗୌରବାନ୍ୱିତ, ଈଷଦୁନ୍ନତ, ମହିମାନ୍ୱିତ, ରହସ୍ୟାବୃତ, ତମସାବୃତ, ତିମିରାବୃତ, ପତାକାବୃତ, ତୁଷାରାବୃତ, ଆଲୁଳାୟିତ, କୌମୁଦୀସ୍ନାତ, ସନ୍ନିବେଶିତ, ପର୍ଯ୍ୟବସିତ, ରୂପାଂତରିତ, ଭାଷାଂତରିତ, ସ୍ଥାନାଂତରିତ, ଅବ୍ୟବହିତ, ଅସମାହିତ, ଅଂତର୍ନିହିତ, ଅବ୍ୟବହୃତ, ସମୟୋଚିତ, ବୟସୋଚିତ, ଯୁବକୋଚିତ, ବର୍ବରୋଚିତ, ବାଳକୋଚିତ, ମାନବୋଚିତ, ପୁରୁଷୋଚିତ, ଗମନୋଦ୍ୟତ, ପ୍ରସ୍ଥାନୋଦ୍ୟତ, ସଂଘର୍ଷୋଦ୍ୟତ, ବିଦେଶାଗତ, ଦକ୍ଷିଣାବର୍ତ୍ତ, ରତ୍ନଖଚିତ, ହୀରାଖଚିତ, ଚରଣାମୃତ, ଚରଣାଶ୍ରିତ, ହସ୍ତଚାଳିତ, ଯଂତ୍ରଚାଳିତ, ବାଷ୍ପଚାଳିତ, ଆଦର୍ଶଚ୍ୟୁତ, କ୍ଷୁଧାଜନିତ, କାଷ୍ଠନିର୍ମିତ, ଲୌହନିର୍ମିତ, ସ୍ୱର୍ଣ୍ଣନିର୍ମିତ, ପ୍ରଥାନୁଗତ, ରାଜାନୁଗତ, ପ୍ରଥାନୁଗତ୍ୟ, ରାଜାନୁଗତ୍ୟ, ଭ୍ରମବଶତଃ, ଭ୍ରାଂତିବଶତଃ, କ୍ଳାଂତିବଶତଃ, ଦୟାବଶତଃ, କୃପାବଶତଃ, ପ୍ରଥାବିହିତ, ଯଥାବିହିତ, ଶାସ୍ତ୍ରବିହିତ, ହସ୍ତଲିଖିତ, ସ୍ୱୟଂଶିକ୍ଷିତ, ଶୀତଳୀକୃତ, ନ୍ୟାୟସଂଗତ, ନ୍ୟାୟସମ୍ମତ,

ଯୁକ୍ତିସଂଗତ, ଯୁକ୍ତିସମ୍ମତ, ରୀତିସଂଗତ, ରୀତିସମ୍ମତ, ପ୍ରଥାସଂଗତ, ପ୍ରଥାସମ୍ମତ, ବିଧିସଂଗତ, ବିଧିସମ୍ମତ, ଶାସ୍ତ୍ରସଂଗତ, ଶାସ୍ତ୍ରସମ୍ମତ, ସର୍ବସମ୍ମତ, ଦୃଷ୍ଟିବାଧିତ, ଶ୍ରୁତିବାଧିତ, କୁଠାରାଘାତ, ସଂଶୟାନ୍ୱିତ, ସଂଶୟାବୃତ, ସଂସାରାସକ୍ତ, ଶିଶିରସ୍ନାତ, ତରଂଗାୟିତ, ତାରକାୟିତ, ସାଧନାରତ, ତତ୍ପରତାରତ, କଳହରତ, କର୍ତବ୍ୟରତ, ଅନବରତ, ଚିରାଚରିତ, ଯଥୋପଯୁକ୍ତ, ଏକାଧିପତ୍ୟ, ଅଧିଗୃହୀତ, ଅଧିସ୍ୱୀକୃତ, ଯଜ୍ଞୋପବୀତ, ଏତଦ୍‌ବ୍ୟତୀତ, ଇଂଦ୍ରିୟାସକ୍ତ, ରୋଗଜନିତ, କ୍ଷୁଧାଜନିତ, ବୃଷ୍ଟିଜନିତ, ଦ୍ୱିଧାଜନିତ, ଆସ୍ପୃହାବଂତ, ଐଶ୍ୱର୍ଯବଂତ, ଅଭିମଂତ୍ରିତ, ଉପୋଦ୍‌ଘାତ, ତଂଦ୍ରାଭିଭୂତ, ବିଷୟାସକ୍ତ, ପରିସ୍ଫୁଟିତ, କାଳିମାଲିପ୍ତ, କୃତକାର୍ଯତା, କୃତକୃତ୍ୟତା, ବଚସ୍କରତା, ଉଦାରଚେତା, ସାଧୀନଚେତା, ଭ୍ରଷ୍ଟାଚାରିତା, ମିଥ୍ୟାଚାରିତା, ସଂକଳାୟିତା, ସତଃସ୍ଫୂର୍ତତା, ତେଜସ୍ୱିୟତା, କ୍ଷିପ୍ରହସ୍ତତା, ଚରିତ୍ରବତ୍ତା, ବୀତଶ୍ରଦ୍ଧତା, ଯଫ୍‌ରୋନାସ୍ତି, ଅତିଶୟୋକ୍ତି, କବିତାବୃତ୍ତି, ପୁନାରବୃତ୍ତି, ସାହିତ୍ୟକୃତି, କ୍ଷେତ୍ରାଧିପତି, କର୍ମବିରତି, ଯୁଦ୍ଧବିରତି, ଚଂଚଳମତି, କୋମଳମତି, ଚପଳମତି, ସର୍ବସମ୍ମତି, ସମାନୁଭୂତି, ସହାନୁଭୂତି, ଏକାଧିପତି,

ଥ

ପ୍ରଥମାବସ୍ଥା, ଶୈଶବାବସ୍ଥା, ବାର୍ଧକ୍ୟାବସ୍ଥା,

ଦ

ପଶ୍ଚାତ୍‌ପଦ, ଶୁଭାଶୀର୍ବାଦ, ଲୋକାପବାଦ, ଭାବାନୁବାଦ, ମର୍ମାନୁବାଦ, କଲ୍ୟାଣାସ୍ପଦ, ବିବାଦାସ୍ପଦ, ସଂଦେହାସ୍ପଦ, ସମ୍ମାନାସ୍ପଦ, ଅପ୍ରତିଦ୍ୱଂଦ୍ୱୀ,

ଧ

ଅସଂଦିଗ୍ଧ, ଔଚିତ୍ୟବୋଧ, ସହଜବୋଧ୍ୟ, ଆୟାସସାଧ୍ୟ, ପରମାରାଧ୍ୟ, ବିକ୍ରୟଲବ୍ଧ, ଜଳସମାଧି, କୃତାପରାଧ, ଚରଣାୟୁଧ, ସହଜସିଦ୍ଧ, ପ୍ରମାଣସିଦ୍ଧ, ଯୋଜନାବଦ୍ଧ, ପ୍ରତିଜ୍ଞାବଦ୍ଧ, ଶୃଂଖଳାବଦ୍ଧ, ସାରଣୀବଦ୍ଧ, ଏକତାବଦ୍ଧ, ପ୍ରଣାଳିବଦ୍ଧ, ବଚନବଦ୍ଧ, ସଂକଳ୍ପବଦ୍ଧ, ଦଶାଶ୍ୱମେଧ,

ନ

ଶାସନାଧୀନ, ନିୟମାଧୀନ, ବିଚାରାଧୀନ, ନିର୍ମାଣାଧୀନ, ଦାୟିତ୍ୱାଧୀନ, ଈଶ୍ୱରାଧୀନ, ଇଂଦ୍ରିୟାଧୀନ, ଭୂୟୋଦର୍ଶନ, ମନୋମାଳିନ୍ୟ, ଉପଢୌକନ, ଅଧଃପତନ, ଅଂତର୍ମୁଖୀନ, ବହିର୍ମୁଖୀନ, ଦଂଡାୟମାନ, ଦେଦୀପ୍ୟମାନ, ଜାଜ୍ୱଲ୍ୟମାନ, ଉଦୀୟମାନ, ପ୍ରତୀୟମାନ, ଦୋଦୁଲ୍ୟମାନ, ରୋରୁଦ୍ୟମାନ, ବିରାଜମାନ, ବିବଦମାନ, ପ୍ରବହମାନ, ପଳାୟମାନ, ଲୀଳାୟମାନ, ଦୋଳାୟମାନ, ଶ୍ୟାମାୟମାନ, ଆବହମାନ, ନିଦ୍ରାୟମାନ, ନିଷ୍ପୀୟମାନ, ବାଷ୍ପାୟମାନ, ନିହନ୍ୟମାନ, ଜନାଂଦୋଳନ, ପ୍ରାତଃକାଳୀନ, ସାୟଂକାଳୀନ, ରାତ୍ରିକାଳୀନ, ରସାସ୍ୱାଦନ, ସମୁତ୍ପାଟନ, ମୂଳୋତ୍ପାଟନ, ଖାଦ୍ୟୋତ୍ପାଦନ, ସନାମଧନ୍ୟ, ଶିକ୍ଷାଭିମାନ, ବିଦ୍ୟାଭିମାନ, ପୂର୍ବାନୁମାନ, ମନୋନୟନ, ପରୀକ୍ଷାଧୀନ, ଭାରୋତ୍ତୋଳନ, ସରୋତ୍ତୋଳନ, ଘଟୋତ୍ତୋଳନ, ଚିତ୍ରୋତ୍ତୋଳନ, ଧ୍ୱଜୋତ୍ତୋଳନ, ଯାବଜ୍ଜୀବନ, ପରିସ୍ଫୁଟନ, ସର୍ବଜନୀନ, ବିଶ୍ୱଜନୀନ, ଗ୍ରାସାଚ୍ଛାଦନ, ଅନୁଶାସନ, ଯାନବାହନ, ଅନୁଶୀଳନ, ସମରାଂଗନ,

ଜ୍ୟୋତିର୍ବିଜ୍ଞାନ, ଅସମୀଚୀନ, ଅବଲୋକନ, ସଂକଟାପନ୍ନ, ଦୁର୍ଦ୍ଦଶାପନ୍ନ, ଗ୍ରୀଷ୍ମକାଳୀନ, ଶୀତକାଳୀନ, ବର୍ଷାକାଳୀନ, ଯାତ୍ରାକାଳୀନ, ଯୁଦ୍ଧକାଳୀନ, କ୍ଷୁଦ୍ରାୟତନ, ଶିକ୍ଷାୟତନ, ଦେବାୟତନ, ଚରିତ୍ରାୟନ, ତତ୍ତ୍ୱାବଧାନ, ନୃତ୍ୟାନୁଷ୍ଠାନ, ଶିକ୍ଷାନୁଷ୍ଠାନ, କଳାନୁଷ୍ଠାନ, ଶିଳ୍ପାନୁଷ୍ଠାନ, ପଂଚୋପାଦାନ, ଜଳପତନ, ମୂଳପତନ, ଗ୍ରୀଷ୍ମପ୍ରଧାନ, ଶୀତପ୍ରଧାନ, ଧ୍ୱନିପ୍ରଧାନ, ରାଗପ୍ରଧାନ, ସହାଧ୍ୟୟନ, ସହାବସ୍ଥାନ, ଭୂମିସଂଲଗ୍ନ, ନଦୀସଂଲଗ୍ନ, ହ୍ରଦସଂଲଗ୍ନ, ପଥସଂଲଗ୍ନ, ଗୃହସଂଲଗ୍ନ, ଅର୍ଥସଂସ୍ଥାନ, କର୍ମସଂସ୍ଥାନ, ଗ୍ରଂଥିମୋଚନ, ପାପମୋଚନ, ଦୁଃଖମୋଚନ, ପୁନରୁତ୍‌ଥାନ, ଇଦାନୀଂତନ, ତଦାନୀଂତନ, ଅଭିବାଦନ, ଅବର୍ତ୍ତମାନ, ଶୁଭାଗମନ, ଶୁଭାନୁଷ୍ଠାନ, ଦିବାବସାନ, ସର୍ବାଂଗାସନ, କର୍ମାବସାନ, କାର୍ଯ୍ୟାନୁଷ୍ଠାନ, ସୂର୍ଯ୍ୟାରାଧନା, ସୂର୍ଯ୍ୟୋପାସନା, ଜଡ଼ୋପାସନା, ଦେବୋପାସନା, ଶିବୋପାସନା, ବୃକ୍ଷୋପାସନା, ଶୂନ୍ୟୋପାସନା, ଧର୍ମୋପାସନା, ଧର୍ମୋନ୍ମାଦନା, କୁତ୍ସାରଟନା, ନିଂଦାରଟନା, ପରିଯୋଜନା, ଅନୁଶୋଚନା, ଅଧିସୂଚନା, ଅବଗଣନା, ପର୍ଯ୍ୟାଲୋଚନା, ଉଦାରମନା, ଚଂଚଳମନା, ଉନ୍ନତମନା, କାମୋତ୍ତେଜନା, ଅଂକଶାୟିନୀ, ପଦାଭିମାନୀ, ଶିକ୍ଷାଭିମାନୀ, ଉପାଧ୍ୟାୟାନୀ, ନିଷ୍ପ୍ରୟୋଜନ, ଭୂରିଭୋଜନ, ପଂକ୍ତିଭୋଜନ, ପ୍ରୀତିଭୋଜନ, ସ୍ୱେଚ୍ଛାଭୋଜନ, ପଂଡିତମ୍ମନ୍ୟ, ଶ୍ରଦ୍ଧାଭାଜନ, ସ୍ନେହଭାଜନ, ଆସ୍ଥାଭାଜନ, ପ୍ରୀତିଭାଜନ, ସୀମାଲଂଘନ, ଗିରିଲଂଘନ, ସତ୍ୟଲଂଘନ, କୂଳଲଂଘନ, ଶବ୍ଦାଭିଧାନ, ଶଯ୍ୟାଚ୍ଛାଦନ, ରୁଚିସଂପନ୍ନ, ଜ୍ଞାନସଂପନ୍ନ, ରହସ୍ୟାଚ୍ଛନ୍ନ, ତମସାଚ୍ଛନ୍ନ, ତୁଷାରାଚ୍ଛନ୍ନ, ସଂଶୟାଚ୍ଛନ୍ନ, ମରଣାସନ୍ନ,

..................................ପ..................................

ଫଳସ୍ୱରୂପ, ବିଶ୍ରଂଭାଳାପ, ମଧୁରାଳାପ, କାର୍ଯ୍ୟକଳାପ, କ୍ରିୟାକଳାପ, ରହସ୍ୟାଳାପ, କପଟାଳାପ, ଉନ୍ନତିକଳ୍ପେ, ଜୀବନବ୍ୟାପୀ, ସପ୍ତାହବ୍ୟାପୀ, ପ୍ରଦେଶବ୍ୟାପୀ, ଦାନବରୂପୀ, ଗୁରୁତ୍ୱାରୋପ,

..................................ବ..................................

ଅଂଗାବୟବ, ମୁଖାବୟବ, ଦେହାବୟବ, ମତାବଲଂବୀ, ଅବଶ୍ୟଂଭାବୀ, ଗଗନଚୁଂବୀ, ଆକାଶଚୁଂବୀ, ହୃତଗୌରବ, ଅଦୃଷ୍ଟପୂର୍ବ, ଅଶ୍ରୁତପୂର୍ବ, ଶିଳାବୟବ, ସର୍ଣ୍ଣାବୟବ, ନେତ୍ରପଲ୍ଲବ, ବିବାହୋତ୍ସବ, ସାହିତ୍ୟୋତ୍ସବ, ବସଂତୋତ୍ସବ, ସମୟାଭାବ, କୁସୁମାସବ, ଅଦତ୍ତପୂର୍ବା, ଶ୍ରମଲାଘବ, କ୍ଳାଂତିଲାଘବ, ଅର୍ଥସର୍ବସ୍ୱ, ଧନସର୍ବସ୍ୱ, ନାମସର୍ବସ୍ୱ, ମହାନୁଭବ, ମୌନାବଲଂବୀ, ଧର୍ମାବଲଂବୀ, ଅଭୂତପୂର୍ବ,

..................................ଭ..................................

ଅୟମାରଂଭ, ସହଜଲଭ୍ୟ, ଶିଶୁସୁଲଭ, କବିସୁଲଭ, ଯୁବସୁଲଭ, ନେତାସୁଲଭ, କନକନିଭ,

..................................ମ..................................

ମ: ଅଂକୁରୋଦ୍‌ଗମ, ହୃଦୟଂଗମ, ଭ୍ରାତୃପ୍ରତିମ, ପିତୃପ୍ରତିମ, ଗୁରୁପ୍ରତିମ, ସୂକ୍ଷ୍ମାତିସୂକ୍ଷ୍ମ, ସଫଳକାମ, ପ୍ରକାଶକ୍ଷମ, ଅମଳକ୍ଷମ, ଇଂଦ୍ରିୟଗମ୍ୟ, ପଶ୍ଚାଦ୍‌ଗାମୀ, ଏକାଦିକ୍ରମେ,

ପର୍ଯ୍ୟାୟକ୍ରମେ, ଆଦେଶକ୍ରମେ, ସଂସାରାଶ୍ରମ, ଚତୁରାଶ୍ରମ, ଭଜନାଶ୍ରମ, ସହାନୁଗାମୀ, ଶବାନୁଗାମୀ, ତଦନୁଗାମୀ,

.................................ଯ / ୟ.................................

ଅନସ୍ୱୀକାର୍ଯ୍ୟ, ଶୀତାତିଶଯ୍ୟ, ଅପରିହାର୍ଯ୍ୟ, ଅଧ୍ୟବସାୟ, ଅନନ୍ୟୋପାୟ, ଯୌବନୋଦୟ, ରସନେନ୍ଦ୍ରିୟ, ନାଟ୍ୟାଭିନୟ, ମୂକାଭିନୟ, ମହଦାଶୟ, ଆଗତପ୍ରାୟ, ସଂଶୋଧନୀୟ, ପ୍ରୟୋଜନୀୟ, ଉଲ୍ଲଂଘନୀୟ, ଅବର୍ଣନୀୟ, ଅନିନ୍ଦନୀୟ, ସମ୍ମାନନୀୟ, ପ୍ରଶଂସନୀୟ, ଅକଥନୀୟ, ଅଖଣ୍ଡନୀୟ, ଅଚିନ୍ତନୀୟ, ଅଭାବନୀୟ, ଅତୁଳନୀୟ, ଅପୂରଣୀୟ, ଆଦରଣୀୟ, ଦୁର୍ଦମନୀୟ, ଅପରାଜେୟ, ପିତୃସ୍ଥାନୀୟ, ମାତୃସ୍ଥାନୀୟ, ପୁତ୍ରସ୍ଥାନୀୟ, ବନ୍ଧୁସ୍ଥାନୀୟ, ଅଗଣନୀୟ, ଉଲ୍ଲେଖନୀୟ, ସଂଘର୍ଷମୟ, ବିଷାଦମୟ, ଉଲ୍ଲାସମୟ, ଆନନ୍ଦମୟ, ଔଷଧାଳୟ, ଚିକିତ୍ସାଳୟ, ସଚିବାଳୟ, ଭୋଜନାଳୟ, ମୁଦ୍ରଣାଳୟ, ଶ୍ୱଶୁରାଳୟ, ଅନ୍ତର୍ଜାତୀୟ, ଅନ୍ତର୍ଦେଶୀୟ, ଅନ୍ତର୍ରାଷ୍ଟ୍ରୀୟ, ଅନାମଧେୟ, ପୃଥୁଳକାୟ, ସଂଯତେନ୍ଦ୍ରିୟ, ଶ୍ରବଣେନ୍ଦ୍ରିୟ, ଅଙ୍ଗୁଳିମେୟ, ଚୈତନ୍ୟୋଦୟ, ଦୁରପନେୟ, ଅଶୋଧନୀୟ, ଅଙ୍କୁରୋଦୟ, ପ୍ରତୀକ୍ଷାଳୟ, ଅସୂର୍ଯ୍ୟଂପଶ୍ୟା, ଅମିତବ୍ୟୟୀ, ତଦନୁଯାୟୀ, ପ୍ରଥାନୁଯାୟୀ, କ୍ରମାନୁଯାୟୀ, ଭୂତଳଶାୟୀ, ସାଧ୍ୟାନୁଯାୟୀ, ସୂତ୍ରାନୁଯାୟୀ, ଲାବଣ୍ୟମୟୀ, ଶୁଭାନୁଧ୍ୟାୟୀ,

.................................ର.................................

ଅନଗ୍ରସର, ଉପସଂହାର, ଏକାଧିକାର, ଜ୍ୟୋଷ୍ଠାଧିକାର, ସତ୍ୱାଧିକାର, ଜନ୍ମାଧିକାର, ମତାଧିକାର, କ୍ଷେତ୍ରାଧିକାର, ବୃହଦାକାର, ଶବ୍ଦାଳଂକାର, ଅର୍ଥାଳଂକାର, ସ୍ୱର୍ଣାଳଂକାର, ରୌପ୍ୟାଳଂକାର, ନ୍ୟାଯ୍ୟାଧିକାର, ଅବିନଶ୍ୱର, କ୍ଷଣଭଂଗୁର, ଅନତିଦୂର, ଅମିତ୍ରାକ୍ଷର, ଯଥେଚ୍ଛାଚାର, କପଟାଚାର, ପ୍ରୀତ୍ୟୁପହାର, ପ୍ରେମୋପହାର, ପରୀକ୍ଷାଗାର, ପରିସ୍ରାଗାର, ଶୟନାଗାର, ବିଶ୍ରାମାଗାର, ସ୍ନାତକୋତ୍ତର, ମରଣୋତ୍ତର, ବିକ୍ରୟୋତ୍ତର, ଇନ୍ଦ୍ରିୟୋତ୍ତର, ଉତ୍ତରୋତ୍ତର, ସ୍ୱର୍ଣକାତର, ବହିର୍ବ୍ୟାପାର, ଅନ୍ତର୍ବ୍ୟାପାର, ସ୍ମୃତିଗୋଚର, ଦୃଷ୍ଟିଗୋଚର, କର୍ଣଗୋଚର, ଶ୍ରୁତିଗୋଚର, ଦଶୋପଚାର, ପଂଚୋପଚାର, ଅସ୍ୱୋପଚାର, ସଚରାଚର, ମୂତ୍ରାତିସାର, ଧର୍ମାବତାର, କୃଷ୍ଣାବତାର, ଯୁଗାବତାର, ରାମାବତାର, ସାହିତ୍ୟେତର, ବ୍ରାହ୍ମଣେତର, ବହ୍ୱାଡ଼ଂବର, ବାହ୍ୟାଡ଼ଂବର, ଶବ୍ଦାଡ଼ଂବର, କ୍ଷୁଧାଜର୍ଜର, ବ୍ୟାଧିଜର୍ଜର, କାମଜର୍ଜର, ଶତ୍ରୁସଂହାର, ନରସଂହାର, ଶୋକସାଗର, ସୁଖସାଗର, ଉବସାଗର, ଜୀର୍ଣସଂସ୍କାର, ଜାତିସଂସ୍କାର, ଶିକ୍ଷାସଂସ୍କାର, ଲିପିସଂସ୍କାର, ବଦ୍ଧପରିକର, ଦୋଷସ୍ୱୀକାର, କଷ୍ଟସ୍ୱୀକାର, ଶ୍ରମସ୍ୱୀକାର, ଉପାୟାନ୍ତର, ଏକାଧୀଶ୍ୱର, ମତାଧିକାରୀ, କପଟାଚାରୀ, ତଦନୁସାରେ, କ୍ରମାନୁସାରେ, ବର୍ଣାନୁସାରେ, ଇତ୍ୟବସରେ, ଇତିମଧ୍ୟରେ, ଜ୍ଞାତସାରରେ, ଅଜାତଶ୍ମଶ୍ରୁ, ମାନବମାତ୍ର,

..................................ଳ..................................

ଳ: ଉଦୟାଚଳ, ଜଠରାନଳ, ବଂଧୁବତ୍ସଳ, ପ୍ରଜାବତ୍ସଳ, ଛାତ୍ରବତ୍ସଳ, ଜନବହୁଳ, ନଦୀବହୁଳ, ବୃକ୍ଷବହୁଳ, ସ୍ମୃତିବହୁଳ, ଯାତ୍ରୀବହୁଳ, ଯାନବହୁଳ, ରୋଗୀବହୁଳ, ବାତାନୁକୂଳ, ମଳୟାନିଳ, ନଦୀସଂକୁଳ, ସର୍ପସଂକୁଳ, ସଂଶୟାକୁଳ, ଅହିନକୁଳ, ଅଂଗାରକାମ୍ଳ, ପଶ୍ଚିମାଂଚଳ, ଦକ୍ଷିଣାଂଚଳ, ଉତ୍ତରାଂଚଳ, ନିଷିଦ୍ଧାଂଚଳ, ଆମୂଳଚୂଳ, ଶସ୍ୟଶ୍ୟାମଳା,

..................................ଶ / ଷ / ସ..................................

ଶ/ଷ/ସ: ପୁନଃପ୍ରବେଶ, ବାକ୍ୟବାଗୀଶ, ଦାସାନୁଦାସ, ଧ୍ୱଂସାବଶେଷ, ଭଗ୍ନାବଶେଷ, ଭୁକ୍ତାବଶେଷ, ନିରବଶେଷ, ଭୂୟୋବିକାଶ, ହିତୋପଦେଶ, ସ୍ଥଗନାଦେଶ, ରହିତାଦେଶ, ସଦୁପଦେଶ, କେଶବିନ୍ୟାସ, ରୂପବିନ୍ୟାସ, ଲିପିବିନ୍ୟାସ, ଶବ୍ଦବିନ୍ୟାସ, ବିହଂଗାବାସ, ନିଭୃତାବାସ, ଜନମାନସ, ଗଣମାନସ, କବିମାନସ, ଶୃତ୍ୟନୁପ୍ରାସ, ମେଘସଦୃଶ, ତାରାସଦୃଶ, ସାହିତ୍ୟାକାଶ, ଗ୍ରୀଷ୍ମାବକାଶ, ଅସାମଂଜସ୍ୟ, ଉଚ୍ଚାଭିଳାଷ, ଅପଚିକୀର୍ଷା, ଉପଚିକୀର୍ଷା, ପ୍ରତିଚିକୀର୍ଷା, ସିଷାଧୟିଷା, ବିପୁଳଯଶା, ଅନୁସଂଧିତ୍ସା, ପ୍ରତିବିଧିତ୍ସା, ଉଚ୍ଚାଭିଳାଷୀ, ଗଗନସ୍ପର୍ଶୀ, ହୃଦୟସ୍ପର୍ଶୀ, ଅତଳସ୍ପର୍ଶୀ, ଅନୁସଂଧିତ୍ସୁ,

..................................ହ..................................

କୌତୁକାବହ, ବିସ୍ମୟାବହ, ପର୍ବତାରୋହୀ, ପଲ୍ଲବଗ୍ରାହୀ,

## ଛଅଅକ୍ଷରୀ ଶବ୍ଦାବଳି

..................................କ..................................

ଆପାଦମସ୍ତକ, ପ୍ରାଗୈତିହାସିକ, ତତ୍ତ୍ୱାବଧାୟକ, ଅସାଂପ୍ରଦାୟିକ, ସମାନୁପାତିକ, ଦ୍ୱିଅର୍ଥବୋଧକ, ଅଂଚଳଭିତ୍ତିକ, ଔପନିବେଶିକ, ବର୍ଣ୍ଣାନୁକ୍ରମିକ, କାଳାନୁକ୍ରମିକ, ବଂଶାନୁକ୍ରମିକ, ପଦାନୁକ୍ରମିକ, ପ୍ରତିନିଧ୍ୟାତ୍ମକ, ବିନିମୟାତ୍ମକ, ସର୍ବାର୍ଥସାଧକ, ନିତ୍ୟନୈମିତ୍ତିକ, ମହାଜାଗତିକ, ଗତାନୁଗତିକ, ବୈୟାକରଣିକ, ପାରମାଣବିକ, ରହସ୍ୟଜନକ, ସଂକଟଜନକ, ସଂଦେହଜନକ, ଆପତ୍ତିଜନକ, ଆଶ୍ଚର୍ଯ୍ୟଜନକ, ଉତ୍ସାହଜନକ, ସମ୍ମାନଜନକ, ବିଦ୍ୱେଷବ୍ୟଂଜକ, ଅସୂୟାମୂଳକ, ସାମସମୟିକ, ସାମାନୁପାତିକ, ଆଂତର୍ପ୍ରାଦେଶିକ, ଉପକ୍ରମଣିକା, ସର୍ବାର୍ଥସାଧିକା,

..................................କ୍ଷ..................................

ସମୟସାପେକ୍ଷ, ପ୍ରମାଣସାପେକ୍ଷ, ବିଚାରସାପେକ୍ଷ, ପରମୁଖାପେକ୍ଷୀ, ଏତଦୁପଲକ୍ଷେ,

..................................ଖ..................................

ପ୍ରଚାରବିମୁଖ, ପୁଂଖାନୁପୁଂଖତା,

..................................ଗ..................................

ସାହିତ୍ୟାନୁରାଗ, ସାହିତ୍ୟାନୁରାଗୀ, ଈଶ୍ୱରାନୁରାଗ, ସମୟୋପଯୋଗୀ, ଚରିତ୍ରୋପଯୋଗୀ, ନଗରୋପଯୋଗୀ,

..................................ଟ..................................

କୃତାଂଜଳିପୁଟ,

..................................ଠ..................................

ନଗରୋପକଂଠ,

..................................ଡ..................................

ଅକାଳକୁଷ୍ମାଂଡ,

..................................ଢ..................................

ସ୍ମୃତିପଥାରୂଢ଼, ଦୃଷ୍ଟିପଥାରୂଢ଼,

..................................ଣ..................................

ବିକୃତୀକରଣ, ବିଚ୍ଛିନ୍ନୀକରଣ, ବିଫଳୀକରଣ, ବିରୂପୀକରଣ, ଶିଥିଳୀକରଣ, ସମୂହୀକରଣ, ସରଳୀକରଣ, ସଶକ୍ତୀକରଣ, ଜାତୀୟକରଣ, ସୌଂଦର୍ଯକରଣ, ଚର୍ବିତଚର୍ବଣ, ଅପସୃୟମାଣ, ମସ୍ତକାବରଣ, ମଂଗଳାଚରଣ, ସଧର୍ମାଚରଣ, କପଟାଚରଣ, ବିଶୁଦ୍ଧାଚରଣ, ତତ୍ତ୍ୱାବଧାରଣ, ଧର୍ମପରାୟଣ, ନୀତିପରାୟଣ, ନ୍ୟାୟପରାୟଣ, ଈର୍ଷାପରାୟଣ, ରକ୍ଷଣାବେକ୍ଷଣ, ପ୍ରଶସ୍ତୀକରଣ, ପ୍ରମାଣୀକରଣ, ପ୍ରଭେଦୀକରଣ, ବିରୂପୀକରଣ, କୁରୂପୀକରଣ, ନିରସ୍ତ୍ରୀକରଣ, ପୁନର୍ବିତରଣ, ପୁନର୍ନିରୀକ୍ଷଣ, ନ୍ୟାୟୋଧିକରଣ, ଧ୍ୱନ୍ୟନୁକରଣ, ଅଂକୁରାରୋପଣ, ଶୁଦ୍ଧାଂତଃକରଣ, ଅଂତର୍ନିରୀକ୍ଷଣ, ବିକେଂଦ୍ରୀକରଣ, ନଗରୀକରଣ, ପ୍ରକଟୀକରଣ, ସତ୍ୱାଧିକାରିଣୀ,

..................................ତ..................................

ଅନବଧାରିତ, ଆନଂଦୋତ୍ଫୁଲ୍ଲିତ, ଶତ୍ରୁକବଳିତ, ନକ୍ଷତ୍ରଖଚିତ, ତାରକାଖଚିତ, ବିଦ୍ୟୁତ୍ଚାଳିତ, ପ୍ରସ୍ତରନିର୍ମିତ, ବାତାନୁକୂଳିତ, କାପୁରୁଷୋଚିତ, ଅଭ୍ୟାସବଶତଃ, କରୁଣାବଶତଃ, ଚଂଦ୍ରିକାବିଧୌତ, ଆଜାନୁଲଂବିତ, ହରିଦ୍ରାରଂଜିତ, କପୋଳକଳ୍ପିତ, ପାରଦଘଟିତ, ଅବ୍ୟବସ୍ଥିତଚିତ୍ତ, ସ୍ୱେଚ୍ଛାପ୍ରଣୋଦିତ, ପୁନରୁଜ୍ଜୀବିତ, ଆସ୍ତୀଚଲଂବିତ, ଧର୍ମାନୁମୋଦିତ, ଶାସ୍ତ୍ରାନୁମୋଦିତ, ଆଘାତଜନିତ, ବିଳଂବଜନିତ, ପ୍ରତିସାକ୍ଷରିତ, ଇଷଦ୍ଧାସ୍ୟଯୁକ୍ତ, ଉପରିଲିଖିତ, ତିଳତଂଡୁଳିତ, ରୋଷକଷାୟିତ, ଈର୍ଷାପ୍ରଣୋଦିତ, ଚଂଦନଚର୍ଚିତ, ଇତିହାସାଶ୍ରିତ, ପରଲୋକଗତ, ଭୂତାଣୁଜନିତ, ଶ୍ରବଣବାଧିତ, ପ୍ରାଚୀରବେଷ୍ଟିତ, ସହସ୍ତଲିଖିତ, ଅଷ୍ଟୋତ୍ତରଶତ, କାୟାଛାୟାବତ୍, ଅନବଧାନତା, ମହାନୁଭବତା, ଆନୁଷଂଗିକତା,

ଆନୁଷ୍ଠାନିକତା, ପାରଂପରିକତା, ପାରସ୍ପରିକତା, ପୃଷ୍ଠପୋଷକତା, ସଂଖ୍ୟାଗରିଷ୍ଠତା, ଅନ୍ୟମନସ୍କତା, ବଂଧୁବତ୍ସଳତା, ଛାତ୍ରବତ୍ସଳତା, ପ୍ରଜାବତ୍ସଳତା, ଅଂତର୍ମୁଖୀନତା, ବହିର୍ମୁଖୀନତା, ଅବିନଶ୍ୱରତା, ସର୍ବଜନୀନତା, ସାର୍ବଜନିକତା, ଅସମୀଚୀନତା, ବ୍ୟାବହାରିକତା, କ୍ଷଣଭଂଗୁରତା, ବିଶ୍ୱଜନୀନତା, ସମାନସ୍କଂଧତା, ସମାଂତରାଳତା, ପ୍ରୟୋଜନୀୟତା, ଅମନୋଯୋଗିତା, କର୍ମୋପଯୋଗିତା, ଯୁଗୋପଯୋଗିତା, ପୌନଃପୁନିକତା, ଅନଗ୍ରସରତା, ଅଯୋନିସଂଭୂତା, ନିରଭିମାନତା, ଅବିଦ୍ୟମାନତା, ଅନୁପଯୋଗିତା, ଅନମନୀୟତା, ସମୟାନୁବର୍ତ୍ତୀ,

.................................ଥ.................................

ଭଗ୍ନମନୋରଥ,

.................................ଦ.................................

ଚରଣାରବିଂଦ, ଈଶ୍ୱରାଶୀର୍ବାଦ,

.................................ଧ.................................

ପରିଶ୍ରମଲବ୍ଧ, ଗବେଷଣାଲବ୍ଧ, ସଲିଳସମାଧି, ସୌଜନ୍ୟମୁଗ୍ଧ, ସର୍ବଜନବୋଧ୍ୟ, ବହୁଜନବୋଧ୍ୟ,

.................................ନ.................................

ରହସ୍ୟୋଦ୍‌ଘାଟନ, ରହସ୍ୟୋନ୍ମୋଚନ, ରହସ୍ୟମୋଚନ, ମୌନାବଲଂବନ, ଚିତ୍ତବିନୋଦନ, ବିଶ୍ୱାସଭାଜନ, ପ୍ରଶଂସାଭାଜନ, ଲୋହିତାୟମାନ, ଅବମୂଲ୍ୟାୟନ, ବିମାନପତନ, ସମୁଦ୍ରପତନ, ସଂକଟମୋଚନ, ବରାନୁଗମନ, ଶବାନୁଗମନ, କଥୋପକଥନ, ଅବମୂଲ୍ୟାୟନ, ସିଂହାବଲୋକନ, ସାହିତ୍ୟାନୁଷ୍ଠାନ, ପୁନର୍ନିର୍ବାଚନ, ପୁନର୍ମୂଲ୍ୟାଂକନ, ପୁନର୍ନିୟୋଜନ, ସଂଗତିସଂପନ୍ନ, ଅଂତଃସାରଶୂନ୍ୟ, କ୍ଷମତାସଂପନ୍ନ, ଦକ୍ଷତାସଂପନ୍ନ, ଅଂଧକାରାଚ୍ଛନ୍ନ, ଶିଖରିଦଶନା, ଈଶ୍ୱରାରାଧନା, ଉଦ୍‌ଭିନ୍ନଯୌବନା, ଦ୍ୱିକୂଳପ୍ଲାବିନୀ, ସୌଭାଗ୍ୟଶାଳିନୀ, ପଦାଭିମାନିନୀ, ବିତ୍ତାଭିମାନିନୀ,

.................................ପ.................................

ବହୁକାଳବ୍ୟାପୀ,

.................................ବ.................................

ଅନତିବିଳଂବ,

.................................ଭ.................................

ଦୁଗ୍ଧଫେନନିଭ, ସଭାବସୁଲଭ,

.................................ମ.................................

ନୟନାଭିରାମ, ଉପାର୍ଜନକ୍ଷମ, ଅବଲୀଳାକ୍ରମେ, ପୁରୁଷାନୁକ୍ରମେ, ଲୁପ୍ତୋଦ୍ଧାରୋଦ୍ୟମ,

..............................ୟ..............................

ଆଗ୍ରହାତିଶଯ୍ୟ, ଅନିର୍ବଚନୀୟ, ଅନିର୍ବଚନୀୟା, ଅନାକର୍ଷଣୀୟ, ପ୍ରାତଃସ୍ମରଣୀୟ, ଅବିସ୍ମରଣୀୟ, ଚିରସ୍ମରଣୀୟ, ଅଂତର୍ବିଭାଗୀୟ, ଅଂତର୍ପ୍ରଦେଶୀୟ, ପୁନର୍ବିନିମୟ, ପ୍ରତିପାଦନୀୟ, ଅଚିକିତ୍ସନୀୟ, ସଂଶୋଧନାଳୟ,

..............................ର..............................

ସଂଶୋଧନାଗାର, ଗବେଷଣାଗାର, ଉତ୍ସବମୁଖର, ପ୍ରଶଂସାମୁଖର, ନେତ୍ରାହ୍ଲାଦାକର, ପରଶ୍ରୀକାତର, ମାନବାଧିକାର, ଉତ୍ତରାଧିକାର, ପ୍ରବେଶାଧିକାର, ବିବେକାଧିକାର, କ୍ଷମତାଧିକାର, ସ୍ୱାଧୀନତୋତ୍ତର, ଉତ୍ତରାଧିକାରୀ, ଦିଗଂତବିସ୍ତାରୀ, ଅନିଂଦ୍ୟସୁଂଦରୀ, ଆଇନାନୁସାରେ, ଯୋଗ୍ୟତାନୁସାରେ, କ୍ଷମତାନୁସାରେ, ଦକ୍ଷତାନୁସାରେ, କହିବାନୁସାରେ,

..............................ଳ..............................

ଘଟନାବହୁଳ, ବ୍ୟସ୍ତତାବହୁଳ, ସ୍ୱଦେଶବତ୍ସଳ, ଚରଣକମଳ, ବିପଦସଂକୁଳ, ସମସ୍ୟାସଂକୁଳ, ଶ୍ୱାପଦସଂକୁଳ,

..............................ଶ / ଷ / ସ..............................

ତଥ୍ୟାପରବଶ, ପ୍ରାସାଦସଦୃଶ, ପ୍ରଚାରସର୍ବସ୍ୱ, ବଚନସର୍ବସ୍ୱ, ତତ୍ତ୍ୱାନୁସଂଧିତ୍ସା, ଏକଦେଶଦର୍ଶୀ, ତତ୍ତ୍ୱାନୁସଂଧିତ୍ସୁ,

## ସାତଅକ୍ଷରୀ ଶବ୍ଦାବଳି

..............................କ..............................

ଅନୁଧ୍ୟାନପୂର୍ବକ, ଧର୍ମୋପଦେଶକ, ହୃଦୟବିଦାରକ, କୌତୂହଳୋଦ୍ଦୀପକ, ଗବେଷଣାଭିତ୍ତିକ, ପରାଜୟସୂଚକ,

..............................ଢ..............................

କିଂକର୍ତ୍ତବ୍ୟବିମୂଢ଼,

..............................ଣ..............................

ଅନନ୍ୟସାଧାରଣ, ଆଧୁନିକୀକରଣ, ଧର୍ମାଂତରୀକରଣ, ପ୍ରାମାଣିକୀକରଣ, ନିୟମିତୀକରଣ, ଅଭିନବୀକରଣ, ଅଭିମୁଖୀକରଣ, ଦଶମିକୀକରଣ, ପୁନର୍ବନୀକରଣ, ସାମାଜିକୀକରଣ, ପ୍ରିୟାପ୍ରୀତିତୋଷଣ, ଆଚଂଡାଳବ୍ରାହ୍ମଣ, ଉଦରପରାୟଣ, କର୍ତ୍ତବ୍ୟପରାୟଣ, ପରସ୍ୱାପହରଣ, ଆତ୍ମସାତ୍‌କରଣ, ଉତ୍ତରାଧିକାରିଣୀ, ତପ୍ତକାଂଚନବର୍ଣ୍ଣା,

..............................ତ..............................

ଉଦ୍ଦେଶ୍ୟପ୍ରଣୋଦିତ, ମରୁଡ଼ିକବଳିତ, ଆଇନାନୁମୋଦିତ, ସୁଦୂରପରାହତ, ଘନତିମିରାବୃତ, କଳ୍ପନାନୁରଂଜିତ, ନିକ୍ୱଣାନୁରଣିତ, ସର୍ବବାଦୀସମ୍ମତ, ଲୋକାଚାରାଧାରିତ, ପରଂପରାଧାରିତ,

ଅବିମୃଷ୍ୟକାରିତା, ପରମୁଖାପେକ୍ଷିତା, ସର୍ବଗୁଣାଳଂକୃତା, ସମୟାନୁବର୍ତ୍ତିତା, ନିୟମାନୁବର୍ତ୍ତିତା, ବର୍ଣ୍ଣାନୁକ୍ରମିକତା, ଅଂତଃସାରଶୂନ୍ୟତା, ସମୟୋପଯୋଗିତା, ସ୍ୱଦେଶବତ୍ସଳତା, ବିଶ୍ୱାସଘାତକତା, ଦ୍ୱିଅର୍ଥବୋଧକତା, ଧର୍ମପରାୟଣତା, ନୀତିପରାୟଣତା, ଈର୍ଷାପରାୟଣତା, ନ୍ୟାୟପରାୟଣତା, ପ୍ରଚାରବିମୁଖତା, ପ୍ରଚାରସର୍ବସ୍ୱତା, ବଚନସର୍ବସ୍ୱତା, ପରଶ୍ରୀକାତରତା, ବହୁକାଳବ୍ୟାପିତା,

....................................ନ....................................

ଅବସରକାଳୀନ, ବିହଂଗାବଲୋକନ, ମୌନାବଲଂବନ, ବିକଟପଦ୍ମାସନ, ଜଗନ୍ନାଥୋପାସନା, ଚାରୁହର୍ମ୍ୟଶାଳିନୀ, ଅଂତଃପୁରବାସିନୀ,

....................................ୟ....................................

ଦୁରତିକ୍ରମଣୀୟ, ଅନତିକ୍ରମଣୀୟ, ଅନନୁକରଣୀୟ,

....................................ବ....................................

ପୁନର୍ମୂଷିକୋଭବ,

....................................ଭ....................................

ତପ୍ତକାଂଚନନିଭ,

....................................ର....................................

କିଂଭୂତକିମାକାର, ଲୋମହର୍ଷଣକାରୀ,

....................................ଳ....................................

ଅଜ୍ଞାତକୁଳଶୀଳ,

....................................ଶୀ....................................

ଅପରିଣାମଦର୍ଶୀ,

....................................ହ....................................

ଗଡ୍ଡଲିକାପ୍ରବାହ,

## ଆଠଅକ୍ଷରୀ ଶବ୍ଦାବଳି

ପ୍ରତିଯୋଗିତାମୂଳକ, ଅନୁସଂଧାନମୂଳକ, ମୃଦୁବାତବିକଂପିତ, କଳରବମୁଖରିତ, ଆନଂଦାଶ୍ରୁବିଗଳିତ, ବ୍ୟାକରଣାନୁମୋଦିତ, ପରଂପରାନୁମୋଦିତ, ଆବାଳବୃଦ୍ଧବନିତା, ଅନନୁକରଣୀୟତା, ଉଦରପରାୟଣତା, କିଂକର୍ତବ୍ୟବିମୂଢ଼ତା, ଅପରିଣାମଦର୍ଶିତା, କର୍ତବ୍ୟପରାୟଣତା, ଅପରିବର୍ତନୀୟତା, ପୂର୍ଣଚଂଦ୍ରନିଭାନନା, ଯୌନାନୁଭୂତିବିହୀନ, ଧନଜନଗୋପଲକ୍ଷ୍ମୀ, ତୁଷାରଧବଳଶଯ୍ୟା, ଅଂଧଗୋଲାଂଗୁଳନ୍ୟାୟ, ତୁଷାରହାରଧବଳା, ବନ୍ୟପୁଷ୍ପଗଂଧବାହୀ, ପ୍ରତିଶୋଧପରାୟଣ,

## ନଅଅକ୍ଷରୀ ଶବ୍ଦାବଳି

ସୁଶ୍ୟାମଳତୃଣାଚ୍ଛାଦିତ, ଫଳପୁଷ୍ପଭାରାବନତ, ଅନଂତୈଶ୍ୱର୍ଯବିଭୂଷିତ, ନାରିକେଳଫଳାଂବୁବତ୍, ଚିରବସଂତଲୀଳାୟିତା, ନବନବୋନ୍ମେଷଶାଳିନୀ, ବ୍ୟଂଜନାଂତ୍ୟାକ୍ଷରୋଚ୍ଚାରଣ, ନିଖିଳୋତ୍କଳୋନ୍ମେଷକାରୀ, ଧର୍ମସଂପ୍ରଦାୟାବଲଂବୀ, ପୁନର୍ନିର୍ବାଚନାନୁଯାୟୀ, ଅବାଙ୍‌ମାନସଗୋଚର, ପ୍ରିୟାପ୍ରୀତିତୋଷଣକାରୀ, ପୁନର୍ମୂଲ୍ୟାଂକନାନୁସାରେ, ଆକୁମାରିକାହିମାଚଳ, ନେଇଆଣିଥୋଇଜାଣିଲେ, ପ୍ରତିଶୋଧପରାୟଣତା,

## ଦଶଅକ୍ଷରୀ ଶବ୍ଦାବଳି

ପ୍ରୟୋଜନାନୁରୂପୀକରଣ, ପରିବେଶାନୁକୂଳୀକରଣ, ନିଖିଳୋତ୍କଳୋନ୍ମେଷକାରିଣୀ, ପ୍ରିୟାପ୍ରୀତିତୋଷଣକାରିଣୀ, ଆଂତର୍ଜାତିକଖ୍ୟାତିସଂପନ୍ନ, ଧର୍ମସଂପ୍ରଦାୟାବଲଂବିନୀ, ବିହଂଗକୂଜନମୁଖରିତ, ଗଜଭୁକ୍ତକପିତ୍‌ଥବତ୍,

## ଏଗାରଅକ୍ଷରୀ ଶବ୍ଦାବଳି

ଦାରିଦ୍ର୍ୟକଶାଘାତପ୍ରପୀଡ଼ିତ, ସଂଘସୂତ୍ରାବଲଂବନପୂର୍ବକ, ଅନଂତବାହୁଦରବକ୍ତ୍ରନେତ୍ର, ପ୍ରୟୋଜାନୁରୂପୀକରଣୀୟ, ପରିବେଶାନୁକୂଳୀକରଣୀୟ,

## ବାରଅକ୍ଷରୀ ଶବ୍ଦାବଳି

ପ୍ରଭଂଜନାକୁଳିତତଂରଗମୟ, ପ୍ରୟୋଜନାନୁରୂପୀକରଣୀୟତା, ପରିବେଶାନୁକୂଳୀକରଣୀୟତା,

ଏହିଭଳି ଶବ୍ଦଗୁଡ଼ିକ ବଦଳରେ ସରଳ ଶବ୍ଦ ଆମର ନିତିଦିନିଆ ଭାଷାରୁ ଖୋଜି ବାହାର ଓ ବ୍ୟବହାର କରିବା ଚଳିତ ସମୟର ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ ଆହ୍ୱାନ। ଓଡ଼ିଆ ଭାଷା ପାଇଁ କିଏ କ'ଣ କରିଛଂତି କି କରିନାହାଂତି, ତାହାର ଅଛିଂଡା ଆଲୋଚନାରେ ସମୟ ନ ସାରି ଆମେ ବ୍ୟକ୍ତିଗତ ସ୍ତରରେ ଯାହା କରିବା, ତାହା ହିଁ ହେବ। ଓଡ଼ିଆ ଭାଷା କାହାର ନିଷ୍ପତ୍ତି କି ପ୍ରସ୍ତାବ ଯୋଗୁଁ ନୁହେଁ, ଏହାର ନିୟମିତ ପ୍ରୟୋଗ ଯୋଗୁଁ ହିଁ ଆଗକୁ ବଢ଼ିପାରିବ। ଅନ୍ୟାନ୍ୟ କ୍ଷେତ୍ରରେ ଯାହା ହେଉ କି ନ ହେଉ, ଭାଷା କ୍ଷେତ୍ରରେ ଏ ଯାଏଁ ଗଣତଂତ୍ର ଚଳିଆସୁଛି ଓ ଏବେ ବି ଚଳୁଛି।

ଯେ କେହି ଟିକିଏ ଇଚ୍ଛା ଓ ଚେଷ୍ଟା କଲେ ଏ ଧରଣର ଅନେକ ଶବ୍ଦ ଗଠନ କରିପାରିବେ। ଯେଉଁ ବକ୍ତା ଓ ଲେଖକମାନେ ନିଜର ମନୋଭାବକୁ ଅନିର୍ଦ୍ଦିଷ୍ଟ, ଅତିରଂଜିତ, ଅସ୍ପଷ୍ଟ ଓ ଆଡ଼ଂବରପୂର୍ଣ କରିବାକୁ ମନ ବଳାଂତି, ସେମାନେ ଏ ଧରଣର ଶବ୍ଦ ପ୍ରୟୋଗକୁ ପସଂଦ କରଂତି। ଏ ପ୍ରକାର ଲେଖକଂକ ସଂଖ୍ୟା ବଢ଼ିଗଲେ ସେମାନଂକ ଦ୍ୱାରା ଯାହା ବି

ଲେଖାହୁଏ, ସେ ସବୁ ଏକ ସଂକୀର୍ଣ୍ଣ ପରିସର ମଧ୍ୟରେ ଅଟକି ରହେ। ଜଟିଳ ବିଷୟକୁ ସରଳ ଭାବରେ ବୁଝାଇପାରିଲେ ଜ୍ଞାନର ପ୍ରସାର ହୋଇଥାଏ। କିଂତୁ ସରଳ ବିଷୟକୁ ଜଟିଳ କରିବା ଯୋଗୁଁ ଜ୍ଞାନ ଅଳ୍ପ ଲୋକଂକ ପାଖରେ ବଂଧା ହୋଇ ଅଟକି ରହେ। ଜ୍ଞାନକୁ ନେଇ ଅଧିକ ରୋଜଗାର ପାଇଁ ବିଭିନ୍ନ ପ୍ରକାର ମଉକା ସୃଷ୍ଟି ହୁଏ, କିଂତୁ କାହା ପାଖରେ ପ୍ରକୃତ ଜ୍ଞାନ ପହଂଚିପାରେନାହିଁ। ଗୋଟିଏ ଜ୍ଞାନ-ବଂଚିତ ସମାଜରେ ଯାହା ଯେମିତି ହୁଏ, ତାହା ଆମେ ସଭିଏଁ ନିଜ ଆଖିରେ ସ୍ପଷ୍ଟ ଭାବେ ଦେଖିପାରୁଛୁଁ।

ଯେଉଁମାନେ ନିଜର ଭାଷାଜ୍ଞାନର ଅନାବଶ୍ୟକ ଓ ବେଳେବେଳେ ହାସ୍ୟକର ପ୍ରଦର୍ଶନ କରିବାକୁ ଚାହୁଁନାହାଂତି, ସେମାନେ ଏ ଭଳି ଶବ୍ଦ ବାଛିବା ଆବଶ୍ୟକ, ଯାହା ସହିତ ପାଠକ ଓ ଶ୍ରୋତାଂକର ପୂର୍ବପରିଚୟ ଥିବ। ଅର୍ଥାତ୍ କଥା ଓ ଲେଖାରେ ସରଳତମ ଶବ୍ଦ ବ୍ୟବହାର କଲେ ହିଁ ତାହା ଅଧିକ ଲୋକ ବୁଝିପାରଂତି। ଓଡ଼ିଶା ଭଳି ଏକ ରାଜ୍ୟରେ ନିଜର ଶବ୍ଦଜ୍ଞାନ ଦେଖାଇବାର କୌଣସି ଆବଶ୍ୟକତା ନାହିଁ।

ଓଡ଼ିଆ ଭାଷାର ଅଂତର୍ଗଠିତ ସରଳତା, ସୁବୋଧ୍ୟତା, ସୂତ୍ରବଦ୍ଧତା ପ୍ରତି ଶ୍ରଦ୍ଧାଭାବ ରଖିଲେ ହିଁ ଆମେ ଆମର ମନୋଭାବ ପ୍ରକାଶ କରିପାରିବା। ଏ ପର୍ଯ୍ୟଂତ ଯାହା ଆମେ ଚଳାଇ ରଖିଛୁଁ, ସେ ସବୁ ବିନା ଦ୍ୱିଧାରେ ଛାଡ଼ି ନ ପାରିଲେ, ଆମେ ଜ୍ଞାନ କ୍ଷେତ୍ରରେ ଖୁବ୍ ପଛୁଆ ହୋଇରହିଥିବା। ପରଂପରାକୁ ପୋଷୁଥିଲେ ଆମର ଚଳିତ ଓ ଆଗାମୀ ସମୟର ଆବଶ୍ୟକତା ପୂରଣ ହୋଇପାରିବନାହିଁ। କେବଳ ବହୁଅକ୍ଷରୀ ଶବ୍ଦ ପ୍ରୟୋଗ ଯୋଗୁଁ କଥା ବା ଲେଖା ଦୁର୍ବୋଧ୍ୟ ହୁଏନାହିଁ। ଯେଉଁ ଅଳ୍ପଅକ୍ଷରୀ ଶବ୍ଦ ସହିତ ଶ୍ରୋତା ବା ପାଠକମାନଂକର ପୂର୍ବପରିଚୟ ନ ଥାଏ, ସେହିଭଳି ଶବ୍ଦର ପ୍ରୟୋଗ ଯୋଗୁଁ ମଧ୍ୟ କଥା ବା ଲେଖା ସହଜରେ ବୁଝିହୁଏନାହିଁ। ଦେଖଂତୁ:

"ଶ୍ଳେଷ, କ୍ଳେଶ, ସ୍ରାବ, ହ୍ରାସ, ଭ୍ରଂଶ, ସ୍ପୃହା, କ୍ରୀଡ଼ା, ପ୍ରଜ୍ଞା, ଘ୍ରାଣ, କ୍ରେତା, ଦ୍ୱେଷ୍ଟା, ବେତ୍ତା, ସ୍ନାତ, ଶ୍ଳଥ, ରିକ୍ତ, ସ୍ନିଗ୍ଧ, ପୂତ, ସ୍ଫୀତ, କ୍ଷୁଣ୍ଣ, ଭୀତି, କ୍ରାଂତି, ଶ୍ରାଂତି, ଗେୟ, ପେୟ, ଗ୍ରାହ୍ୟ, ଗାତ୍ର, ବକ୍ତ୍ର, ତ୍ୱଚା, କମ୍ର, ନମ୍ର, ସଂଶୟ, ଜିଜ୍ଞାସା, ଜିଗୀଷା, ଅଭିଧା, ଅନୁଜ୍ଞା, ଈକ୍ଷଣ, ଆନନ, କାନନ, ପାତନ, ଏଷଣା, ବାଚକ, ସ୍ରାବକ, ସ୍ମାରକ, ପାଦପ, ଗର୍ହିତ, ରହିତ, କ୍ଷାଳିତ,"

ଏଠାରେ ଲେଖାଯାଇଥିବା ଦୁଇ ଓ ତିନିଅକ୍ଷରୀ ଶବ୍ଦଗୁଡ଼ିକ ପ୍ରତି ଟିକେ ଧ୍ୟାନ ଦେବା। ଆମର ନିତିଦିନିଆ କଥାବାର୍ତ୍ତା ବେଳେ ଏଗୁଡ଼ିକୁ ଆମେ କହୁଁ କି? ଯେଉଁ ଶବ୍ଦ ଆମେ କହୁଁନାହିଁ କି ଶୁଣୁନାହିଁ, କେବଳ ଲେଖିବା ବେଳେ ସେସବୁର ପ୍ରୟୋଗ ଅନାବଶ୍ୟକ ନୁହେ କି? ଯେଉଁ ଶବ୍ଦ ଆମର ସଚଳ ସ୍ମୃତିରେ ସାଇତା ହେବା ପରିବର୍ତ୍ତେ କେବଳ ଗ୍ରଂଥଗୁଡ଼ିକରେ ଅଟକି ରହିଛି, ସେହି ଶବ୍ଦ ବ୍ୟବହାର କରି ଆମେ ଆମର ମନୋଭାବ ପ୍ରକାଶ କରିପାରିବାନାହିଁ।

ଅଜଣା, ଅଶୁଣା, ଅଦେଖା, ଦୁର୍ବୋଧ୍ୟ ଶବ୍ଦର ମୋହିନୀ ଶକ୍ତି ଦ୍ୱାରା ଯେଉଁ ବକ୍ତା ବା ଲେଖକ ବିହ୍ୱଳ ହୋଇଥାଆଂତି, ସେ ହୁଏତ ନିଜର ପାଂଡିତ୍ୟ ଓ ଶବ୍ଦଜ୍ଞାନ ପ୍ରଦର୍ଶନ କରଂତି, କିଂତୁ ଭାବ ପ୍ରକାଶ କରିପାରଂତିନାହିଁ। ଲୋକଭାଷାର ନିତିଦିନିଆ ଶବ୍ଦଗୁଡ଼ିକୁ ଯେଉଁମାନେ

ହତାଦର ଓ ଉପେକ୍ଷା କରଂତି, ସେମାନେ ଲୋକଂକର ସ୍ୱାଭାବିକ ଭାଷାପ୍ରୀତିକୁ ପରିପୁଷ୍ଟ କରିବା ପରିବର୍ତେ ବ୍ୟାହତ କରଂତି। ଲୋକଭାଷା ଓ ଲିଖିତ ଭାଷା ମଧ୍ୟରେ ବ୍ୟବଧାନ ବଢ଼ିଗଲେ ଲୋକମାନେ ଆଉ ପଢ଼ାପଢ଼ି ଆଦୌ କରଂତିନାହିଁ। ଓଡ଼ିଆ ଭାଷା କ୍ଷେତ୍ରରେ ଏବେ ଏହା ହିଁ ଘଟିଛି। ଲେଖକ, ସଂପାଦକ, ପ୍ରକାଶକମାନେ ନିଜ ନିଜର ପୂର୍ବ ଅଭ୍ୟାସ ନ ଛାଡ଼ିବା ଯାଏଁ ଆମର ଏହି ଦୁରବସ୍ଥା ଲାଗିରହିଥିବ।

## ଅପ୍ରଚଳିତ ଶବ୍ଦ ପ୍ରତି ପ୍ରୀତି ...

ଏ ପର୍ଯଂତ ଓଡ଼ିଆରେ ଚଳୁଥିବା ଶବ୍ଦଗୁଡ଼ିକୁ 'ଅପଭ୍ରଷ୍ଟ' ଓ ସଂସ୍କୃତ ଭାଷାର ଅପ୍ରଚଳିତ ଶବ୍ଦଗୁଡ଼ିକୁ 'ସାଧୁ' ଆଖ୍ୟା ଦିଆଯାଉଛି। ସଂସ୍କୃତ ଭାଷାର ଶବ୍ଦାବଳିକୁ ହିଁ ଅଧିକ ମର୍ଯାଦା ଦିଆଯାଉଛି ଏବଂ ପାଂଜିଗୁଡ଼ିକରେ ସେହି ଅଜଣା, ଅଶୁଣା ଶବ୍ଦଗୁଡ଼ିକର ଅଭ୍ୟାସଗତ ପ୍ରୟୋଗ ଚାଲିଛି। ଲୋକଂକ ଭାଷାକୁ ଉପେକ୍ଷା କରି ଓଡ଼ିଆ ଭାଷାର ବିକାଶ ଚିଂତା୍ ମୋଟାମୋଟି ଭାବରେ ନିରର୍ଥକ ନୁହେ କି ? ଏଠାରେ ସୁପ୍ରଚଳିତ ଅଥଚ ଲେଖାଲେଖି ବେଳେ ଉପେକ୍ଷିତ ଓଡ଼ିଆ ଶବ୍ଦଗୁଡ଼ିକୁ ତାଲିକାବଦ୍ଧ କରାଯାଇଛି। ବଂଧନୀ ମଧ୍ୟରେ ସେହି ଶବ୍ଦଗୁଡ଼ିକର ସଂସ୍କୃତ ପ୍ରତିଶବ୍ଦ ଦେଖାଇଦିଆଯାଇଛି।

ଅଁଳା (ଆମଳକ), ଅଗଣା (ଅଂଗନ), ଅଦା (ଅର୍ଦ୍ରକ), ଅଳତା (ଅଲକ୍ତକ), ଆଇଁଷ (ଆମିଷ), ଆଖି (ଅକ୍ଷି), ଆଖୁ (ଇକ୍ଷୁ), ଆଡ଼ଗୁଷା (ଅର୍ଧରୋଷ), ଆଂବ (ଆମ୍ର), ଇଟା (ଇଷ୍ଟକ), ଉଆଁସ (ଅମାବାସ୍ୟା), ଉପାସ (ଉପବାସ), ଓଟ (ଉଷ୍ଟ୍ର), ଓଠ (ଓଷ୍ଠ), ଓଦା (ଆର୍ଦ୍ର), ଓସ୍ତ (ଅଶ୍ୱତ୍ଥ), କଅଁଳ (କୋମଳ), କଇଁଛ (କଚ୍ଛପ), କଇଁଥ (କପିତ୍ଥ), କଉଡ଼ି (କପର୍ଦକ), କଖାରୁ (କର୍କାରୁ), କନିଅର (କର୍ଣିକାର), କପା (କାର୍ପାସ), କାଠ (କାଷ୍ଠ), କାଦୁଅ (କର୍ଦମ), କାଲି (କଲ୍ୟ), କିଆରି (କେଦାର), କିଛି (କିଂଚିତ୍), କୁକୁଡ଼ା (କୁକ୍କୁଟ), କୁକୁର (କୁକ୍କୁର), କେଉଟ (କୈବର୍ତ), କୋଇଲି (କୋକିଳ), କୋଠା (କୋଷ୍ଠ), କୋଳ (କ୍ରୋଡ଼), ଖଂବ (ସ୍ତଂଭ), ଖାର (କ୍ଷାର), ଗଂଠି (ଗ୍ରଂଥି), ଗଧ (ଗର୍ଦଭ), ଗପ (ଗଳ୍ପ), ଗାଆଁ (ଗ୍ରାମ), ଗୁଆ (ଗୁବାକ), ଗୁଆଘିଅ (ଗବ୍ୟଘୃତ), ଗୋଛା (ଗୁଚ୍ଛ), ଗୋଠ (ଗୋଷ୍ଠ), ଘିଅ (ଘୃତ), ଚକ (ଚକ୍ର), ଚମ (ଚର୍ମ, ତ୍ୱକ୍, ତ୍ୱଚା), ଚାଉଳ (ତଂଡୁଳ), ଚାଂଦୁଆ (ଚଂଦ୍ରାତପ), ଛତା (ଛତ୍ର), ଛାଇ (ଛାୟା), ଛେଳି (ଛାଗଳ), ଜିଭ (ଜିହ୍ୱା), ଜୋକ (ଜଳୌକା), ଝିଅ (ଦୁହିତା), ଡାହାଣ (ଦକ୍ଷିଣ), ଡିମିରି (ଉଡ୍ଡୁମ୍ବର), ତେଲ (ତୈଳ), ଦୂବ (ଦୂର୍ବା), ଧଳା (ଧବଳ), ଧାଇ (ଧାତ୍ରୀ), ଧାନ (ଧାନ୍ୟ), ଧୂଆଁ (ଧୂମ), ନଈ (ନଦୀ), ନଡ଼ିଆ (ନାରିକେଳ), ନାକ (ନାସିକ), ନୂଆ (ନବ), ନେଉଳ (ନକୁଳ), ପଇତା (ଉପବୀତ), ପଛ (ପଶ୍ଚାତ୍), ପଡ଼ିଆ (ପ୍ରାଂତର), ପଥର (ପ୍ରସ୍ତର), ପହର (ପ୍ରହର), ପାଉଁଶ (ପାଂଶୁ), ପାଂଜି (ପଂଜିକା), ପାହାଚ (ପାବଙ୍କ), ପିଂପୁଡ଼ି (ପିପୀଲିକା), ପୁଅ (ପୁତ୍ର), ପୁଣି (ପୁନଃ), ଫଗୁଣ (ଫାଲ୍‌ଗୁନ), ବଗ (ବକ), ବଳା (ବଳୟ), ବାଇଗଣ (ବାତିଂଗଣ),

ବାଘ (ବ୍ୟାଘ୍ର), ବାଲି (ବାଲୁକା), ବିଛା (ବୃଶ୍ଚିକ), ବିରି (ବ୍ରୀହି), ବିଲେଇ (ବିଡ଼ାଳ), ବୁଢ଼ା (ବୃଦ୍ଧ), ଭଅଁର (ଭ୍ରମର), ଭଂଗା (ଭଗ୍ନ), ଭାଇ (ଭ୍ରାତା), ଭାଲୁ (ଭଲ୍ଲୁକ), ମଥା (ମସ୍ତକ), ମଦୁଆ (ମଦ୍ୟପ), ମହୁ (ମଧୁ), ମାଂକଡ଼ (ମର୍କଟ), ମାଛ (ମତ୍ସ୍ୟ), ମାଟି (ମୃତ୍ତିକା), ମାଦଳ (ମର୍ଦ୍ଦଳ), ମିଛ (ମିଥ୍ୟା), ମିଠା (ମିଷ୍ଟ), ମୂତ (ମୂତ୍ର), ମୁହଁ (ମୁଖ), ରାତି (ରାତ୍ରି), ଲାଉ (ଅଲାବୁ), ଲୁହା (ଲୌହ), ଶାଗ (ଶାକ), ଶିଉଳି (ଶୈବାଳ), ଶେତା (ଶ୍ୱେତ), ସଜ (ସଦ୍ୟ), ସଂଜ (ସଂଧ୍ୟା), ସାତ (ସପ୍ତ), ସିଝା (ସିଦ୍ଧ), ସୁଅ (ସ୍ରୋତ), ସୁନା (ସ୍ୱର୍ଣ୍ଣ), ହଳଦି (ହରିଦ୍ରା), ହାଟ (ହଟ୍ଟ), ହାତ (ହସ୍ତ),

ଯେଉଁ ସବୁ ଶବ୍ଦ ସୁପରିଚିତ, ସେହିସବୁ ବଦଳରେ ଆମେ ଜଟିଳ, କଷ୍ଟକର ସଂସ୍କୃତ ଶବ୍ଦ କହୁଥିବା ଓ ଲେଖୁଥିବା ଯାଏଁ ଓଡ଼ିଆର ପକ୍ଷଧର ହୋଇପାରିବାନାହିଁ। କେତେକଂକର ଧାରଣା ଯେ ସଂସ୍କୃତ ନ କହିଲେ ଭାଷାର ସୌଂଦର୍ଯ୍ୟ ଓ ଶକ୍ତି ବଢ଼େନାହିଁ। ଲୋକେ ବୁଝିପାରୁଥିବା ଭଳି ଭାଷାରେ କହିଲେ, ବକ୍ତାଂକର ପାଂଡିତ୍ୟ ପ୍ରଦର୍ଶିତ ହୋଇପାରେନାହିଁ। ପ୍ରଦର୍ଶନକାମୀ ବକ୍ତାଗଣ ଭାବ ବିନିମୟ ହେଉ କି ନ ହେଉ, ଶବ୍ଦ ବାଛିବା ବେଳେ କଷ୍ଟକର ସଂସ୍କୃତ ଶବ୍ଦ ହିଁ ପସଂଦ କରିଥାଆଂତି।

ଚଳିତ ସମୟରେ ବ୍ୟବହୃତ କଥିତ ଓ ଲିଖିତ ଭାଷାର ପ୍ରକୃତ ସ୍ୱରୂପ କ'ଣ ଓ କିପରି, ତାହାର ତଥ୍ୟ ଓ ପରିଚୟ ଏହି ବହିରେ ଲେଖାହୋଇଛି। ଅନ୍ୟ ଭାଷାରେ ହୁଏତ ଏଭଳି କାର୍ଯ୍ୟ କୌଣସି ଅନୁଷ୍ଠାନ ଦ୍ୱାରା ସାଧିତ ହୋଇଥାଆଂତା। କିଂତୁ ଓଡ଼ିଶାର କୌଣସି ଅନୁଷ୍ଠାନ, ପ୍ରତିଷ୍ଠାନ ବା ସଂସ୍ଥା ଏ ଦିଗ ପ୍ରତି ଆଗ୍ରହୀ ନ ଥିବାର ଲକ୍ଷ୍ୟ କରି ମୁଁ ବ୍ୟକ୍ତିଗତ ଭାବରେ ଏ କାର୍ଯ୍ୟ କରିଛି। ଯେଉଁ ଅଭାବ ମୁଁ ଅନୁଭବ କରିଛି, ତାହା ଦୂର କରିବା ମୋର କର୍ତ୍ତବ୍ୟ ବୋଲି ମନେ ହେବାରୁ ଏ ବହିଟି ମୁଁ ଲେଖିଛି।

ମୁଁ ଓଡ଼ିଆ ଭାଷାକୁ ନିଜେ ଯେମିତି ଓ ଯେତିକି ଚିହ୍ନିଛି, କେବଳ ସେତିକି ହିଁ ଅନ୍ୟମାନଂକୁ ଜଣାଇଛି। ଏ ବହିରେ ଓଡ଼ିଆ ଭାଷାର ଅତୀତ ନାହିଁ, ଭବିଷ୍ୟତ ବି ନାହିଁ। ବର୍ତ୍ତମାନ ହିଁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ମନେ ହେବା ଯୋଗୁଁ ମୁଁ ଏହି ଭାଷାର ଏକ ପରିଚୟାତ୍ମକ ସୂକ୍ଷ୍ମ ଚିତ୍ର ହିଁ ଅଂକନ କରିଛି। ଭାଷାକୁ ମଧ୍ୟ ଅଣୁ ସ୍ତରରେ ଅଧ୍ୟୟନ କରିବାର ଆବଶ୍ୟକତା ଅନୁଭୂତ ହେବାରୁ ମୁଁ ନିଜର ସୀମିତ ସାଧନ ବିନିଯୋଗ ମାଧ୍ୟମରେ ଏ କାର୍ଯ୍ୟ କରିଛି।

ଭାଷାକୁ ଆଧାର କରି ଅନ୍ୟମାନେ ଯେଉଁ କାର୍ଯ୍ୟ କରିଛଂତି, ତହିଁରୁ ମୋତେ ଭାଷାର ପରିଚୟ ନ ମିଳିବାରୁ ମୁଁ ଏହି ବହି ଲେଖି ସେହି ପରିଚୟ ଖୋଜିଛି। ପାଠକମାନେ ଏବେ ଆମ ଭାଷାର ସ୍ୱରୂପ ସଂଧାନ କାମରେ ମନୋନିବେଶ କରିବା ଦ୍ୱାରା ଏ କାମକୁ ଆଗକୁ ବଢ଼ାଇପାରିବେ।

ଯାହା ମୂଳତଃ ଜ୍ଞାନ, ତତ୍ତ୍ୱ ଓ ବିଜ୍ଞାନର ବିଷୟ, ତାହାର ବିଧେୟତା ନିମଂତେ ଧନବଳ, ଜନବଳ, କ୍ଷମତାବଳର ପ୍ରୟୋଗ ଭଳି ଅପକର୍ମରେ ସାଧାରଣତଃ ଧନବାନ୍ ପ୍ରକାଶକ, ସଂଗଠିତ ସଂସ୍ଥାର କର୍ମକର୍ତ୍ତା, ଉଚ୍ଚ ପଦବିଧାରୀ ନେତା ଓ ପ୍ରଶାସକମାନେ ଲିପ୍ତ ରହୁଥିବାର

ଦେଖାଯାଏ। ଧନ ଓ କ୍ଷମତା, ଏ ଭଳି ଦୁଇଟି ଧାରଣା; ଯାହା ମୂଳତଃ ପ୍ରତିଭା ଓ ଜ୍ଞାନ ବିରୋଧୀ ହିଁ ହୋଇଥାଏ। ଯେତେ ଅଧିକ ଧନବାନ୍ ଓ କ୍ଷମତାଧାରୀ ହୋଇଥିଲେ ହେଁ, ଧନ ଓ କ୍ଷମତା ହରାଇବାର ଆଶଂକାଗ୍ରସ୍ତ ହୋଇ ଏମାନେ ସବୁପ୍ରକାର କାମ କରଂତି।

ଯାହା ମନକୁ ଆଶଂକା ଓ ଡର ପଶିଯାଏ, ତା ମନରୁ ସାହସ ଅପସରିଯାଏ। ହାରିବାର କି ହରାଇବାର ଡର ଟିକକ ଯୋଗୁଁ ଏ ପ୍ରକାର ବ୍ୟକ୍ତିଂକର ଚେତନାରେ ଉଦ୍‌ଭାବନୀ ଶକ୍ତି ମୋଟେ ନ ଥାଏ। ଯଦିବା କିଛି ଥାଏ, ତାହାକୁ ସେମାନେ ଦମନ କରିବାର କଳାକୌଶଳ ଶିଖିଥାଆଂତି। କିଂତୁ ଭାଷାର ଅଂତର୍ଗଠିତ ଗରିମା କହିଲେ ଆମେ ଏହି ଉଦ୍‌ଭାବନୀ ଶକ୍ତିକୁ ହିଁ ମାନିଥାଉଁ। ଭାଷା ଆମକୁ ମୁକ୍ତିର ସ୍ୱାଦ ଏତେ ନିବିଡ଼ ଭାବରେ ଦିଏ ଯେ, ଅନ୍ୟ ସବୁ କିଛି ତୁଚ୍ଛ ମନେ ହୁଏ।

ଯେଉଁମାନେ ଭାଷା-ଜଡ଼ିତ ହୋଇ ରହିବାକୁ ପସଂଦ କରଂତି, ସେମାନେ ସବୁବେଳେ ଭାଷାକୁ ନିଜ ମନ ଭିତରେ ଖେଳାଉଥାଆଂତି। ଏମିତି ଆମୋଦକ ଖେଳରୁ ଯାହା ବି ସେମାନେ ପାଆଂତି, ସବୁ ବାଂଟି ଦିଅଂତି। ଭାଷା-ଲଗ୍ନ ବ୍ୟକ୍ତିମାନେ କେବେ ବି କିଛି କାହାଠାରୁ ଆଶା କରଂତିନାହିଁ।

ଆଶ୍ରିତ ହେବା ମାନେ ନିଜର ଅନନ୍ୟ ଓ ସ୍ୱାଧୀନ ଚେତନାକୁ ଦମନ କରିବା। ଯେଉଁମାନେ ତାହା କରଂତି, ସ୍ରଷ୍ଟା ତାଂକୁ କେବଳ ଦୟା ହିଁ କରଂତି। ଈଶ୍ୱର ଯେହେତୁ ସ୍ୱୟଂ ନିର୍ବିକଳ୍ପ, ସେ ଯେଉଁମାନଂକୁ ସୃଷ୍ଟି କରଂତି ସେମାନେ ବି ସ୍ୱତଃ ନିର୍ବିକଳ୍ପ ହୋଇଥାଆଂତି। ଅନନ୍ୟ ହେବା ପାଇଁ ଚେଷ୍ଟା କରିବାକୁ ପଡ଼େନାହିଁ। ଅନ୍ୟ କାହା ପରି ହେବା ପାଇଁ ହିଁ ଚେଷ୍ଟା କରିବାକୁ ପଡ଼େ। ଏତିକି ତ ମାନିବାକୁ ହେବ।

ସଂସ୍କୃତ ସହିତ ଓଡ଼ିଆ ଭାଷାର ତୁଳନା ଆରଂଭ କରିବା ମାତ୍ରେ ଆମକୁ ଗୋଟିଏ ଭେଦ ସ୍ପଷ୍ଟ ରୂପେ ଜଣାପଡ଼େ। ସଂସ୍କୃତ ଏକ ସଂଶ୍ଳେଷଣାତ୍ମକ ଭାଷା ହୋଇଥିବା ସ୍ଥଳେ ଓଡ଼ିଆ ଏକ ବିଶ୍ଳେଷଣାତ୍ମକ ଭାଷା। ସଂସ୍କୃତ ଭାଷାରେ ସଂଧି ଓ ସମାସ ପ୍ରକ୍ରିୟା ଦ୍ୱାରା ଏକାଧିକ ଶବ୍ଦକୁ ଏକାଠି ଯୋଡ଼ିବାର ପରଂପରା ସୁପ୍ରତିଷ୍ଠିତ। କିଂତୁ ଓଡ଼ିଆରେ ପ୍ରତ୍ୟେକ ଶବ୍ଦର ଏକକତ୍ୱ ବଜାୟ ରଖିବାର ପରଂପରା ସୁପ୍ରଚଳିତ। ସଂସ୍କୃତରେ ସଂକ୍ଷିପ୍ତତା ନିମଂତେ ଲେଖକମାନେ ସର୍ବଦା ଯତ୍ନଶୀଳ ହେଉଥିବା ବେଳେ ଓଡ଼ିଆ କହୁଥିବା ଲୋକମାନେ ସବୁ କଥା ବିସ୍ତାରିତ ଭାବରେ ପ୍ରକାଶ କରିବାକୁ ପସଂଦ କରଂତି।

ସଂସ୍କୃତରେ ଜ୍ଞାନଧାରଣ ହିଁ ମୁଖ୍ୟ ଉଦ୍ଦେଶ୍ୟ; କିଂତୁ ଓଡ଼ିଆରେ ଭାବପ୍ରକାଶ ହିଁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ। ଏହି କାରଣ ଯୋଗୁଁ ଓଡ଼ିଆରେ ଲଂବା ଲଂବା ଶବ୍ଦର ପ୍ରଚଳନ ଆଦୌ ସ୍ୱାଭାବିକ ମନେ ହୁଏନାହିଁ। ଯାହା ଶ୍ରୁତିମଧୁର ବୋଲି ଆମେ ମନେ କରୁଁ, ତାହା ଯେତେ ସାଂଗୀତିକ ହେଲେ ବି ଭାବପ୍ରକାଶକ୍ଷମ ନ ହେବା ଯାଏଁ ନିରର୍ଥକ ଧ୍ୱନି ସମବାୟ ହିଁ ହୋଇଥାଏ। ଯେଉଁମାନେ ଭାଷାକୁ ମନୋଭାବ ପ୍ରକାଶର ସହଜ ମାଧ୍ୟମ ରୂପେ ବ୍ୟବହାର କରଂତି, ସେମାନେ ପ୍ରାୟତଃ ଜଟିଳତା ବର୍ଜନ କରିଥାଆଂତି। କେତେକ ନିର୍ଦ୍ଦିଷ୍ଟ ଧରଣର ସାହିତ୍ୟ

ରଚନା ନିମଂତେ ଆଳଂକାରିକ ଭାଷାର ଆବଶ୍ୟକତା ଥିଲେ ହେଁ, ସିଧାସାଦା ନୁଖୁରା ଭାଷା ହିଁ ମଣିଷର ମନୋଭାବର ଯଥାର୍ଥ ବାହକ ହୋଇଥାଏ। ଯେଉଁମାନେ ଭାଷା ମାଧ୍ୟମରେ ମନୋଭାବକୁ ଲୁଚାଇବାକୁ ଚେଷ୍ଟା କରଂତି, କେବଳ ସେମାନଂକ ପାଇଁ ଆଳଂକାରିକ, ଆଡ଼ଂବରପୂର୍ଣ୍ଣ ଭାଷା ଆଦର୍ଶସ୍ଥାନୀୟ ହୋଇଥାଏ। ଯେଉଁମାନଂକର ଆଡ଼ଂବରପ୍ରିୟତା ଓ ଜ୍ଞାନଗର୍ବ ଯୋଗୁଁ ଏବେ ଓଡ଼ିଆ ଭାଷା ଅପାଠ୍ୟ ଓ ଅବୋଧ୍ୟ ହୋଇପଡ଼ିଛି, ସେମାନଂକର ରଚନାଶୈଳୀକୁ ଆଦର୍ଶ ରୂପେ ସ୍ୱୀକାର କରି ଅନୁକରଣ କରିଚାଲିଲେ ଓଡ଼ିଆ ଭାଷାରେ ଲିଖିତ ସାହିତ୍ୟର ପାଠକ ସଂଖ୍ୟା ବଢ଼ିବାର ସଂଭାବନା ଆଦୌ ନାହିଁ। ଯେଉଁ ଧରଣର ସାହିତ୍ୟକୁ ଲୋକେ ଗତ ପଚାଶ, ଷାଠିଏ ବର୍ଷ ଧରି ଏଡ଼ାଇ ଆସିଛଂତି, ସେହି ଧରଣର ସାହିତ୍ୟ ଆଉ ଯେତେ ଅଧିକ ପରିମାଣରେ ଲେଖା ହେଲେ ବି ଅବସ୍ଥା ସୁଧୁରିବାର କୌଣସି ଲକ୍ଷଣ ଦେଖାଯାଉନାହିଁ।

ବରଂ ସବୁ ପ୍ରକାର ପ୍ରତିକୂଳତା ସତ୍ତ୍ୱେ ଯେଉଁ ଗ୍ରାମବାସୀ, ଅଳ୍ପଶିକ୍ଷିତ ଓଡ଼ିଆମାନେ ନିଜର ଭାଷାକୁ ଏ ପର୍ଯ୍ୟଂତ ବଂଚାଇ ରଖିଛଂତି, ଏବେ ସେମାନଂକର କଥନ ଓ ଲିଖନ ଶୈଳୀ ହିଁ ଆମର ଆଦର୍ଶ ହେବା ଆବଶ୍ୟକ। ଆମର ସାଧାରଣ ଲୋକେ ଆଦୌ ଅନୁଦାର ନୁହଂତି। ସେମାନେ ବୁଝିପାରିବା ଭଳି ଭାଷାରେ କହିଲେ ଓ ଲେଖିଲେ, ଏବର ଲେଖକମାନେ ବି ସେମାନଂକଠାରୁ ଯଥୋଚିତ ଆଦର ଓ ଶ୍ରଦ୍ଧା ପାଇପାରିବେ।

କିଂତୁ ଏହା ପାଇବା ନିମଂତେ ପ୍ରଥମେ ଏବର ଲେଖକମାନଂକୁ ସାହିତ୍ୟ ପ୍ରତି ନିଜର ମନୋଭାବ୍ ବଦଳାଇବାକୁ ପଡ଼ିବ। ଯେଉଁମାନେ ଏ କଥାରେ ରାଜି ହେବେନାହିଁ, ସେମାନେ ନିଜର ଅତି ସୀମିତ ବଂଧୁ ମହଲରେ ହିଁ କିଛି କିଛି ପ୍ରାୟୋଜିତ ଖ୍ୟାତି ଓ ସମ୍ମାନ ପାଇପାରଂତି। କିଂତୁ ସେମାନଂକୁ ଯେ ପାଠକ ମିଳିବେନାହିଁ, ଏହା ବେଶ୍ ଜଣାଶୁଣା କଥା।

ଓଡ଼ିଶା ଭଳି ଏକ ଗରିବ ରାଜ୍ୟରେ ଯେଉଁମାନେ ନିଜର ଧନ ଓ ଜ୍ଞାନର ପ୍ରଦର୍ଶନୀ କରଂତି, ସେମାନଂକଠାରୁ ଅଧିକ ନିର୍ଲଜ୍ଜ ଆଉ କେହି ନ ଥାଆଂତି। ଲୋକଂକ କିଣିବା ଶକ୍ତି ନ ଥିବା ଯୋଗୁଁ ଏଠି ଜ୍ଞାନପାଠର ଭାଷା ଏମିତି ହେବା ଆବଶ୍ୟକ, ଯେମିତି ଖଂଡିଏ ବହି କିଣି ଅନେକ ଶ୍ରୋତାଂକୁ ପଢ଼ି ଶୁଣାଇଦେଲେ ପ୍ରତ୍ୟେକ ଶ୍ରୋତା ସବୁ ବିଷୟ ଭଲ ଭାବରେ ବୁଝିପାରୁଥିବେ।

କୌଣସି ଶବ୍ଦର ଧ୍ୱନି ମଧୁରତା ଯୋଗୁଁ ତାହା କାନକୁ କେତେ ସାଂଗୀତିକ ତୃପ୍ତି ଦିଏ, ତାହାଠାରୁ ମନକୁ କେତେ ଭେଦେ, ତାହା ଅଧିକ ଗୁରୁତ୍ୱପୂର୍ଣ୍ଣ। ତେଣୁ ଶବ୍ଦ ବାଛିବା ବେଳେ ଯଦି ତାହାର ଅର୍ଥବୋଧକୁ ଅଧିକ ପ୍ରାଧାନ୍ୟ ଦିଆଯାଏ, ତାହେଲେ ତାହା ଅଧିକ ଲୋକ ବୁଝିପାରଂତି। କେବଳ ପ୍ରଶଂସା ଲୋଭରେ ଯେଉଁମାନେ କିଛି କହଂତି କି ଲେଖଂତି, ସେମାନେ ଅଳ୍ପ କେତେଜଣ ସାହିତ୍ୟ ରସିକଂକଠାରୁ ପ୍ରଶଂସା ପାଆଂତି, କିଂତୁ ବହୁସଂଖ୍ୟକ ପାଠକ ଏ ଭଳି ଲେଖକଂକଠାରୁ ଦୂରରେ ରହଂତି।

ଯେଉଁ ଖାଦ୍ୟରେ କେବଳ ସ୍ୱାଦ ଥାଏ ଏବଂ କୌଣସି ପୁଷ୍ଟିଦାୟକ ଉପାଦାନ ନ ଥାଏ ତାହାକୁ 'ବାଜେ ଖାଦ୍ୟ' ବା 'ଜଂକ୍ ଫୁଡ୍' ନାମ ମିଳେ। ଏ ଭଳି ଖାଦ୍ୟ ଯେତେ ଖାଇଲେ ବି ଆମର ସ୍ୱାସ୍ଥ୍ୟ ପାଇଁ ତାହା ହିତକର ହୁଏନାହିଁ। ଅନୁରୂପ ଭାବରେ ଯେଉଁ ପାଠ ପଢ଼ିଲା ବେଳେ କାନକୁ ମଧୁର ଶୁଭେ, ତହିଁରୁ ମନକୁ କିଛି ଖୋରାକ ମିଳେନାହିଁ। ଏ ପ୍ରକାର ଲେଖା ସୁଖପାଠ୍ୟ ହୋଇପାରେ, କିଂତୁ ଏହା ପଢ଼ିବା ଯୋଗୁଁ ପାଠକର ମନ ଓ ଚେତନା ସମୃଦ୍ଧ ହୁଏନାହିଁ। ବିବେକୀ ପାଠକମାନେ ଏ ପ୍ରକାର ପାଠକୁ 'ବାଜେ' ଆଖ୍ୟା ଦିଅଂତି ଓ ଏଭଳି ପାଠ ପଢ଼ିବାରେ ନିଜକୁ ନିୟୋଜିତ କରଂତିନାହିଁ।

ବାରଂବାର ପ୍ରମାଣିତ ହୋଇଛି ଯେ ସରଳ, ନିତିଦିନିଆ ଭାଷା ହିଁ ଭାବ ପ୍ରକାଶ ଓ ଜ୍ଞାନସଂଚାର ନିମଂତେ ସବୁଠାରୁ ଅଧିକ ଉପଯୋଗୀ ଭାଷା। ଏ ଭଳି ଭାଷାକୁ ଆଦର କରିଜାଣିଲେ ଆମର ସାମାଜିକ, ସାଂସ୍କୃତିକ, ବୌଦ୍ଧିକ ଓ ଆଧ୍ୟାତ୍ମିକ ଚେତନା ବିକଶିତ ଓ ପରିପୁଷ୍ଟ ହୋଇଥାଏ। କେବଳ ବହିରେ ପଢ଼ିଥିବା କଥା ପୁଣି ଥରେ ଲେଖିପକାଇଲେ ତାହା କେବଳ ପୁନରାବୃତ୍ତି ହିଁ ହୋଇଥାଏ। ଆମର ସରଳରୈଖିକ ଜୀବନ ଜନ୍ମରୁ ଆରଂଭ ହୋଇ ମୃତ୍ୟୁ ଆଡ଼କୁ ବଢ଼ିଚାଲିଥାଏ। ଜୀବନରେ ଯେହେତୁ କ୍ଷୟ ନାହିଁ, ପୁନରାବୃତ୍ତି ନାହିଁ, ଭାଷାରେ ତେଣୁ ତାହାର ସ୍ଥାନ କାହିଁ ?

ଆମ ଭାଷାରେ ଚଳୁଥିବା ଶବ୍ଦଗୁଡ଼ିକର ଗଠନ ପଦ୍ଧତି ଅନୁସାରେ ଶବ୍ଦ ସହିତ ଶବ୍ଦ ଯୋଡ଼ି ଆମେ ଅସଂଖ୍ୟ ନୂଆ ଶବ୍ଦ ଗଢ଼ିପାରିବା। କିଂତୁ ସେଗୁଡ଼ିକର ବାସ୍ତବ ପ୍ରୟୋଗ ହେବ କି ନାହିଁ, ତାହା ଆମର ନିୟଂତ୍ରଣ ବାହାର ପ୍ରସଂଗ। ଉଦାହରଣ ସ୍ୱରୂପ 'ଉପ' ସହିତ ଅନ୍ୟାନ୍ୟ ଶବ୍ଦ ଯୋଡ଼ି ଆମେ 'ଉପବଂଧୁ, ଉପଖାଦ୍ୟ, ଉପବସ୍ତ୍ର, ଉପକକ୍ଷ, ଉପପ୍ରକୋଷ୍ଠ, ଉପଶିକ୍ଷକ, ଉପଛାତ୍ର, ଉପଘାଟ, ଉପଦୃଶ୍ୟ' ଭଳି ଏବେ କାନକୁ ନୂଆ ଶୁଭୁଥିବା ଓ ଆଖିକୁ ନୂଆ ଦିଶୁଥିବା ଅନେକ ଶବ୍ଦ ଗଢ଼ିପାରିବା। ଏ ପ୍ରକାର ଶବ୍ଦଖେଳ ଲୋକମାନେ କରୁଥାଅଂତି।

ବାରଂବାର ଗୋଟିଏ ପ୍ରକାର ଖାଦ୍ୟ ଖାଇବାକୁ, ଲୁଗା ପିଂଧିବାକୁ, କାମ କରିବାକୁ ଲୋକମାନେ ଆଗ୍ରହୀ ହୁଅଂତିନାହିଁ। ଭାଷା କ୍ଷେତ୍ରରେ ମଧ୍ୟ ସେମାନେ ବାରଂବାର ଗୋଟିଏ ପ୍ରକାରେ କହିବାକୁ ଓ ଲେଖିବାକୁ ଭଲ ପାଆଂତିନାହିଁ। ତେଣୁ ସେମାନେ ସବୁବେଳେ ନୂଆ ଆଡ଼କୁ ଟାଣି ହୁଅଂତି। ଏହି କାରଣ ଯୋଗୁଁ ଭାଷାରେ ସର୍ବଦା ନୂଆ ନୂଆ ପ୍ରୟୋଗ ଘଟୁଥାଏ ଏବଂ ସେହି ଅନୁସାରେ ଭାଷା ବଦଳିଯାଉଥାଏ।

ଓଡ଼ିଆ ଲିପିଚର୍ଚ୍ଚାର ଇତିହାସରେ ପ୍ରଥମ ଥର ପାଇଁ ଏହି ଅଭିନବ ଗ୍ରନ୍ଥରେ ଓଡ଼ିଆ ବର୍ଣ୍ଣାବଳିର ଫୁଙ୍ଖାନୁଫୁଙ୍ଖ ଓ ସୂକ୍ଷ୍ମାତିସୂକ୍ଷ୍ମ ଅଧ୍ୟୟନ ଓ ବିଶ୍ଳେଷଣ କରାଯାଇଛି । ବିଜ୍ଞାନ-ସମ୍ମତ ତଥ୍ୟ ଉପସ୍ଥାପନ ଓ ସଜ୍ଜୀକରଣ ଯୋଗୁଁ ଓଡ଼ିଆ ବର୍ଣ୍ଣାବଳିର ସ୍ୱଷ୍ଟ ଚିତ୍ର ଓ ଚରିତ୍ର '**ବର୍ଣ୍ଣବିଧାନ**' ଗ୍ରଂଥରେ ପରିସ୍ଫୁଟିତ ହୋଇପାରିଛି ।

ପାରଂପରିକ ଓ ଆଧୁନିକ ଉଭୟ ବର୍ଣ୍ଣସଂଯୋଜନ ପଦ୍ଧତିର ଏକତ୍ର ଅବସ୍ଥାନ ଯୋଗୁଁ ଏହି ଗ୍ରନ୍ଥରୁ ଆଗ୍ରହୀ ପାଠକଗଣ ପ୍ରାମାଣିକ ଜ୍ଞାନ ପାଇପାରିବେ । ଚଳିତ ସମୟର ସର୍ବାଧିକ କ୍ରିୟାଶୀଳ ଭାଷାବିଜ୍ଞାନୀ ଡକ୍ଟର୍ ପ୍ରଫୁଲ୍ଲ କୁମାର ତ୍ରିପାଠୀଂକର ଏହି ଗ୍ରଂଥଟି ଓଡ଼ିଆ ଭାଷାକୁ ବିଶ୍ୱସ୍ତରରେ ପ୍ରତିଷ୍ଠିତ କରିବା ନିମଂତେ ସହାୟକ ହେବ ବୋଲି ଆଶା ଓ ଅନୁମାନ କରାଯାଇପାରେ ।

ଏହା ହିଁ ଓଡ଼ିଆ ଭାଷାର ପ୍ରଥମ ବର୍ଣ୍ଣ-ବ୍ୟାକରଣ ।

